



**ମନୋଜ ସାହୁ**

ସଦସ୍ୟ

ଓଡ଼ିଶା ସାହିତ୍ୟ ଏକାଡେମୀ

ମାଲକାନଗିରି - ୭୬୪ ୦୪୫

ଓଡ଼ିଶା

# ମାଲକାନଗିରି ଇତିହାସ


ଲେଖକ :
ମନୋଜ ସାହୁ



ପ୍ରକାଶକ :
ଅନିରୁଦ୍ଧ ସାହୁ
ଗାୟତ୍ରୀ କୁଟୀର
ମାଲକାନଗିରି -୭୬୪ ୦୪୫

ପ୍ରଚ୍ଛଦ ଓ ଚିତ୍ର: ରାଜା

ପ୍ରଥମ ପ୍ରକାଶ :
ଉତ୍କଳ ଦିବସ, ୧୯୯୯

ଡି.ଟି.ପି. :
ଅଗ୍ରଣୀ ଡି.ଟି.ପି.,
ଘର ନଂ- ଏ/୧୧,
ସୁନାବେଡ଼ା- ୭୬୩ ୦୦୨

ମୁଦ୍ରଣ: ଟେକ୍‌ନୋ ଆର୍ଟ୍‌ସ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ-୧୩

ମୂଲ୍ୟ : ପଇଁଚାଳିଶ ଟଙ୍କା ମାତ୍ର

# ଉତ୍ସର୍ଗ

- ମାଲକାନଗିରି ରାଣୀ ବାଙ୍ଗାରୁ ଦେବୀ
- ବିପ୍ଳବୀ କୋୟାରାଜା ଟାମାଦୋରା
- ଆଲୁରୀ ସୀତାରାମା ରାଜୁ
- ଶହୀଦ ଲକ୍ଷ୍ମଣ ନାୟକ

ଏବଂ

ବିନା ପ୍ରଶଂସା ଆଶାରେ
ଯେଉଁମାନେ ଏହି ଅଞ୍ଚଳ ପାଇଁ
ନିସ୍ୱାର୍ଥପର ଭାବେ କିଛି
ସମୟ ଦାନ କରି
ଏହି ଜିଲ୍ଲାର ଉନ୍ନତି ଓ ସମୃଦ୍ଧି ପାଇଁ
କାମ କରି ଚାଲିଛନ୍ତି ... ... ...
ସେହିମାନଙ୍କ ଉଦ୍ଦେଶ୍ୟରେ
ପୁସ୍ତକଟିକୁ ଅର୍ପଣ କରୁଛି ।।

ମନୋଜ ସାହୁ

# ସୂଚୀପତ୍ର





# ସତ୍ୟପାଠ





ପ୍ରତ୍ୟେକ ସ୍ଥାନର ଏକ ଇତିହାସ ରହିଥିବା ପରି ମାଲକାନଗିରିର ମଧ୍ୟ ଏକ ଗୌରବମୟ ଇତିହାସ ରହିଛି । ମୁଁ ଏହାର ପାଣି ପବନରେ ବଢ଼ି ନିଜକୁ ଧନ୍ୟ ମନେ କରିବା ସହିତ ଇତିହାସର ଜଣେ ଛାତ୍ର ଭାବରେ କିଛିଦ ଗଣ ମୁଭି ଥାଣାରେ ଏହାର ଲୁକ୍କାୟିତ ମହାନତା, ଐତିହ୍ୟ ଓ ସଂସ୍କୃତିକୁ ସମସ୍ତଙ୍କ ନିକଟରେ ଉପସ୍ଥାପନ କରିବାର ପ୍ରୟାସ କରିଛି ମାତ୍ର ।

ଏହି ପୁସ୍ତକରେ ମାଲକାନଗିରିର ସମସ୍ତ ସ୍ୱାଧୀନତା ସଂଗ୍ରାମୀମାନଙ୍କର ତ୍ୟାଗ ଓ ବଳିଦାନ ସଂପର୍କିତ ଏକ ତାଲିକା ପ୍ରକାଶନ ସହ ଅତୀତର ବହୁ ଗୁରୁତ୍ୱପୂର୍ଣ୍ଣ କଥା ଉପରେ ଯଥା ସମ୍ଭବ ଗବେଷଣାତ୍ମକ ତଥ୍ୟ ପ୍ରଦାନ ପାଇଁ ଚେଷ୍ଟା କରାଯାଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ - କୋଣାକାମେରୁ ଅଞ୍ଚଳରେ ଥିବା ସିଲେରୁ ନଦୀ କୂଳରେ ଦିନେ ମହେଞ୍ଜୋଦାରୋ ଓ ହରପ୍ପା ସଭ୍ୟତା ଭଳି ପ୍ରାଚୀନ ସଭ୍ୟତା ଗଢ଼ି ଉଠିଥିଲା - ତାହା ଦେଶର ଏକ ବୃହତ୍ ବିଦ୍ୟୁତ ପରିକଳ୍ପନା କାର୍ଯ୍ୟକାରୀ ହେବା ଫଳରେ ଏହି ସଭ୍ୟତାର ଭଗ୍ନାବଶେଷ ଚିତ୍ରକୋଣ୍ଡା ଜଳଭଣ୍ଡାର ମଧ୍ୟରେ ଜଳମଗ୍ନ ହୋଇଗଲା । ଯାହାଫଳରେ ସବୁଦିନ ପାଇଁ ଏହି ଅଞ୍ଚଳର ପ୍ରାଚୀନ ସଭ୍ୟତା ଅନ୍ଧକାର ମଧ୍ୟରେ

ରହିଗଲା । ଏହା ବ୍ୟତୀତ ୧୫୧ ଖଣ୍ଡରୁ ଊର୍ଦ୍ଧ୍ୱ ଗ୍ରାମ ଜଳଭଣ୍ଡାରର ଅପର ପାର୍ଶ୍ୱରେ ରହିଯିବାରୁ ସେ ଅଞ୍ଚଳର ଅଧିବାସୀମାନେ ଅନେକ ସମସ୍ୟା ମଧ ଦେଇ ଗତି କରୁଛନ୍ତି । ଏହି ପଛୁଆ ଜିଲ୍ଲାର ଅନଗ୍ରସରତାର ସୁଯୋଗ ନେଇ କିଛି ବର୍ଷ ହେଲା ସାମାନ୍ତରେ ନକ୍ସଲପନ୍ଥୀ ସମସ୍ୟାର ସୂତ୍ରପାତ ହୋଇଛି । ତେବେ ଚାରିଆଡ଼େ ରାସ୍ତାଘାଟ, ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ, ବିଦ୍ୟୁତ୍, କର୍ମଚାରୀମାନଙ୍କ ଆବାସ, କାର୍ଯ୍ୟାଳୟ ଗୃହ ଓ କାର୍ଯ୍ୟରତ କର୍ମଚାରୀଙ୍କୁ ପ୍ରୋତ୍ସାହନ ଭଳି ଗୁରୁତ୍ୱପୂର୍ଣ୍ଣ କଥାକୁ ତ୍ୱରାନ୍ୱିତ କରାଯାଇପାରିଲେ ସବୁ କଥା ଆପେ ଆପେ ଠିକ୍ ହୋଇଯିବ ବୋଲି ଆଶା କରାଯାଏ ।

ଏହି ଜିଲ୍ଲାରେ ସରକାରଙ୍କ ତରଫରୁ ଆଦିବାସୀମାନଙ୍କ ଉନ୍ନତି ପାଇଁ ଯୋଜନା ଓ ପାଣ୍ଠିର ଅଭାବ କେବେ ପରିଲକ୍ଷିତ ହୋଇନାହିଁ । ସମୟାନୁକ୍ରମେ ବହୁ ଆଦିବାସୀ ଅଫିସର ଓ ଆଦିବାସୀ ନେତୃ ସ୍ଥାନୀୟ ବ୍ୟକ୍ତି ଏଠାରେ କାର୍ଯ୍ୟ ନିର୍ବାହ କରିଅଛନ୍ତି । କିନ୍ତୁ, ସେମାନଙ୍କର ଯେତିକି ଉନ୍ନତି ହେବା କଥା ସେତିକି ହୋଇ ପାରିନାହିଁ । ଏହି ଜିଲ୍ଲାରେ ବସବାସ କରୁଥିବା ଗୌଡ଼, ମାଳି ଓ ରଣା ଆଦି ସମ୍ପ୍ରଦାୟକୁ ସରକାରୀ ଭାବରେ ଆଦିବାସୀ ବୋଲି ଗ୍ରହଣ କରାଯାଇନାହିଁ । ସେଥିପାଇଁ ଏମାନଙ୍କର ଆର୍ଥିକ ଓ ସାମାଜିକ ଅବସ୍ଥାର ଉନ୍ନତି ଘଟିପାରୁନାହିଁ । ଦଣ୍ଡକାରଣ୍ୟ ପରିଯୋଜନାରେ ୧୯୫୮ ମସିହା ପରଠାରୁ ଏହି ଜିଲ୍ଲାରେ ଥଇଥାନ ହୋଇଥିବା ଦଶ ହଜାର ବଙ୍ଗୀୟ ଶରଣାର୍ଥୀ ପରିବାର ଉନ୍ନତି କରି ସାମାଜିକ ଓ ଅର୍ଥନୈତିକ ସ୍ତରରେ ନିଜର ସ୍ଥିତିକୁ ସୁଦୃଢ଼ କରିପାରିଥିବା ଆନନ୍ଦର ବିଷୟ । ଉଦାହରଣ ସ୍ୱରୂପ ଏହି ଜିଲ୍ଲାର ଶତକଡ଼ା ୮୦ ଭାଗ ପ୍ରାଥମିକ ଶିକ୍ଷକ ବଙ୍ଗାଳି ଅଟନ୍ତି । ଏଠାକାର ଆଦିବାସୀ ଓ ବଙ୍ଗାଳିମାନଙ୍କ ମଧରେ ଯେଉଁ ମୈତ୍ରୀ ଭାବ ରହିଛି ତାହା ଅଭୂତପୂର୍ବ ।

ଏହି ବହିଟି ପ୍ରକାଶ ପୂର୍ବରୁ ଏଥିରେ ସ୍ଥାନ ପାଇଥିବା କେତେକ ଲେଖା ଦୈନିକ ସମ୍ବାଦ, ଅନୁପମ ଭାରତ, ଓ ମାଲକାନଗିରି ବିଜ୍ଞାପିତ ଅଞ୍ଚଳ ପରିଷଦର ସ୍ମରଣିକାରେ ପ୍ରକାଶିତ ହୋଇଛି । ପ୍ରକାଶିତ ଲେଖା ଉପରେ ଶ୍ରୀଯୁକ୍ତ ପ୍ରହ୍ଲାଦ ଦୋରା, ପୂର୍ବତନ ବାଚସ୍ପତି ଚିଠି ଲେଖି ଉତ୍ସାହିତ କରିଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଲକ୍ଷ୍ମଣ ନାୟକଙ୍କ କନ୍ୟା ଶ୍ରୀମତୀ କୌଶଲ୍ୟା ନାୟକ ସମେତ ଅନେକ ବରେଣ୍ୟ ସ୍ୱାଧୀନତା ସଂଗ୍ରାମୀ ଏବଂ ଏହି ଅଞ୍ଚଳର ବରିଷ୍ଠ ଆଦିବାସୀ ନେତା ଓ ବର୍ତ୍ତମାନର ଚିତ୍ରକୋଣ୍ଡା ବିଧାୟକ ଶ୍ରୀଯୁକ୍ତ ଗଙ୍ଗାଧର ମାଡ଼ି ଏହି ପୁସ୍ତକ ପ୍ରକାଶନ ପାଇଁ ବହୁ ତଥ୍ୟ ପ୍ରଦାନ କରିଛନ୍ତି । ଏହି ଅବସରରେ ସେହି ସମସ୍ତଙ୍କ ଠାରେ ମୋର କୃତଜ୍ଞତା ସ୍ୱୀକାର କରୁଛି ।

ମୋର ଜଣେ ବିଶିଷ୍ଟ ବନ୍ଧୁ ଶ୍ରୀଯୁକ୍ତ ବାବଲୁ ଭଟ୍ଟାଚାର୍ଯ୍ୟ ଏହି କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ ପ୍ରଦାନ କରିବା ସହ ପୁସ୍ତକର ବଙ୍ଗଳା ଅନୁବାଦ ମଧ୍ୟ ଆରମ୍ଭ କରିଛନ୍ତି । ସେଥିପାଇଁ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପରିଶେଷରେ ପାଣ୍ଡୁଲିପିଟିକୁ ଆବଶ୍ୟକୀୟ ସଂଶୋଧନ, ସୁଚିନ୍ତିତ ମତାମତ , ନିର୍ଭୁଲ ଡି.ଟି.ପି. ଓ ସୁନ୍ଦର ମୁଦ୍ରଣ ପାଇଁ ସମସ୍ତ ପ୍ରକାର ସହଯୋଗ ପ୍ରଦାନ କରିଥିବାରୁ ମୋର ଶ୍ରେଷ୍ଠ ସାରସ୍ୱତ ଶୁଭେଚ୍ଛୁ ତଥା ଓଡ଼ିଶାର ଜଣେ ସୁନାମଧନ୍ୟ ସାହିତ୍ୟିକ ଅଧ୍ୟାପକ ଡକ୍ଟର ବସନ୍ତ କିଶୋର ସାହୁ, ସୁନାବେଡ଼ାଙ୍କ ନିକଟରେ ମୁଁ ଋଣୀ ହୋଇ ରହିବି । ଏଥିପାଇଁ ତାଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

ବର୍ତ୍ତମାନ ଓ ଆଗାମୀ ପୀଢ଼ି ପାଇଁ ଏହା ପାଠକମାନଙ୍କର ରୁଚିବୋଧ ଓ ଆଦରଣୀୟ ହୋଇ ପାରିଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ମନେ କରିବି । ପ୍ରକାଶିତ କୌଣସି ବିଷୟରେ ସଂଶୋଧନ ବା ପରିବର୍ତ୍ତନ ମନେ କଲେ ଦୟାକରି ଯୋଗାଯୋଗ କରିବାକୁ ଅନୁରୋଧ ।

ମନୋଜ ସାହୁ

# ଅତୀତରେ ମାଲକାନଗିରି

ଆଜିର ଅତ୍ୟାଧୁନିକ ମାଲକାନଗିରି ଜିଲ୍ଲା ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବେ ସୃଷ୍ଟି ହୋଇଛି ବୋଲି ଅନୁମାନ କରାଯାଏ । ଏହାର ପବିତ୍ର ତମସା ନଦୀ କୂଳରେ ଆଦିକବି ବାଲ୍ମୀକି କ୍ରୌଞ୍ଚ(ସାରସ) ଦମ୍ପତିଙ୍କ ମଧୁର ମିଳନ ଅବସରରେ ନିଷ୍ଠୁର ବ୍ୟାଧର ଶରାଘାତ ଯୋଗୁଁ ଉପୁଜିଥିବା ଦାରୁଣ ଯନ୍ତ୍ରଣାରେ ମର୍ମାହତ ହୋଇ ସୃଷ୍ଟି କରିଥିଲେ ପୃଥିବୀର ପ୍ରଥମ କବିତା-

'ମା ନିଷାଦ ପ୍ରତିଷ୍ଠା ତ୍ୱମଗମଃ ଶାଶ୍ୱତଃ ସମାଃ
ଯଦ୍ କ୍ରୌଞ୍ଚ ମିଥୁନା ଦେକମବ୍ଧୀଃ କାମ ମୋହିତମ୍ ।।'

ଏହି ଅନୁଭବ ଆଦିକବିଙ୍କୁ ପ୍ରେରିତ କରିଥିଲା ରାମାୟଣ ରଚନା କରିବା ପାଇଁ । ଭାରତୀୟ ସଂସ୍କୃତିର ପ୍ରତୀକ ରାମାୟଣର ଭିତ୍ତିଭୂମି ପ୍ରତିଷ୍ଠିତ ହୋଇଥିଲା ଏହି ମାଲକାନଗିରିର ତମସା ନଦୀ କୂଳରେ । ଏହି ପବିତ୍ର ଭୂମିରେ ରଚିତ ହୋଇଥିବା ରାମାୟଣ କଥା ହେଉଛି ସଦାଚାରର ବଳିଷ୍ଠ ପ୍ରେରଣା ଯାହାକି ପୃଥିବୀର କୋଣେ କୋଣେ ଆଜି ପ୍ରଚାରିତ ଓ ଆଦୃତ ।

ପୂର୍ବେ ଏହାକୁ ମାଲ୍ୟବତଗିରି କୁହାଯାଉଥିଲା । ଏହା ରାମାୟଣରେ ବି ଉଲ୍ଲେଖ ରହିଛି । ବଳରାମ ଦାସ ତାଙ୍କର ପ୍ରସିଦ୍ଧ ଦାଣ୍ଡିରାମାୟଣରେ ଲେଖିଛନ୍ତି ।

ଆଷାଢ଼ ମାସ ପ୍ରବେଶ ହୋଇଲା ଯହୁଁ,
ଝିମି ଝିମି କରିଣ ସେ ବରଷଇ ତହୁଁ ।।
ମାଲ୍ୟବନ୍ତ ପର୍ବତେ ଯେ ଶ୍ରୀରାମ ଅଛନ୍ତି,
ଅନେକ ଦୁଃଖେଣ ସେ ବରଷା ବଞ୍ଚୁଛନ୍ତି ।।
(ମାଲ୍ୟବନ୍ତରେ ବର୍ଷାକାଳ)

ଏଠାକାର ରାଜାମାନେ ମାଣିକେଶ୍ୱରୀ ଦେବୀ ଓ ମଲ୍ଲିକେଶ୍ୱର ଦେବତାଙ୍କୁ ମାନୁଥିଲେ । ସେମାନଙ୍କର ଇଷ୍ଟ ଦେବତା ମଲ୍ଲିକେଶ୍ୱରଙ୍କ ନାମ ଅନୁସାରେ ଏହାକୁ ପ୍ରଥମେ ମଲ୍ଲିକାନଗରୀ କୁହାଯାଉଥିଲା । ପରବର୍ତ୍ତୀ କାଳରେ ଅପଭ୍ରଂଶ ହୋଇ ଏହାର ନାମ ମାଲକାନଗିରି ରଖାଯିବା ଅନୁମାନ କରାଯାଏ ।

ମାଲକାନଗିରିର ଏକ ପାହାଡ଼ ଗୁମ୍ଫାରୁ ବାହାରି ଆସିଥିବା ତମସା ଭାରତର ଏକ ପବିତ୍ର ନଦୀ । ଏହା କ୍ଷୁଦ୍ର ହେଲେହେଁ ଅତ୍ୟନ୍ତ ମନୋରମ ଓ ମନମୁଗ୍ଧକର । ଗତ କିଛି ବର୍ଷ ହେଲା ଏହାରି କୂଳରୁ ଯେପରି କ୍ରମାଗତ ଭାବେ ପ୍ରାଚୀନ ମୂର୍ତ୍ତି ତଥା ବୌଦ୍ଧ ଓ ଜୈନ କଳାକୃତି ମାଟିତଳୁ ମିଳୁଛି, ତାକୁ ଦେଖି ନିଃସନ୍ଦେହରେ କୁହାଯାଇପାରେ ଯେ ଏହା ହିଁ ସେହି ରାମାୟଣ ବର୍ଣ୍ଣିତ ତମସା । ଏଠାକାର ଆଦିବାସୀ ଭାଷାରେ କୁହାଯାଉଥିବା ତଂସା(ଗର୍ତ୍ତ)ଶବ୍ଦରୁ ଏହା ତମସା ହୋଇଛି ବୋଲି ଗବେଷଣାରୁ ଜଣା ପଡ଼େ । ୧୯୯୫ ମସିହାରେ ଏହି ନଦୀ କୂଳରୁ ଏକ ଶିବଲିଙ୍ଗକୁ ଉଦ୍ଧାର କରାଯାଇ ମାଲକାନଗିରି ଜଗନ୍ନାଥ ମନ୍ଦିର ବେଢ଼ା ମଧ୍ୟରେ ପାର୍ଶ୍ୱ ଦେବତା ଭାବେ ପ୍ରତିଷ୍ଠା କରାଯାଇ ବଦଳେଶ୍ୱର ନାମକରଣ କରଯାଇଥିଲା । ଏକଦା ସ୍ୱୟଂ ରାମଚନ୍ଦ୍ର ଏହି ମାଲ୍ୟବନ୍ତ ପାହାଡ଼ରେ କିଛି ସମୟ ଅବସ୍ଥାନ କରିଥିବା ରାମାୟଣରେ ବର୍ଣ୍ଣିତ ହୋଇଛି ।

ମହାଭାରତ ଯୁଗରେ ମଧ୍ୟ ପାଣ୍ଡବମାନଙ୍କୁ ଯେତେବେଳେ ଅଜ୍ଞାତ ବାସ କରିବାକୁ ପଡ଼ିଥିଲା, ସେତେବେଳେ ମାଲକାନଗିରି ବଣ ଜଙ୍ଗଲ ହିଁ ତାଙ୍କର ପ୍ରଧାନ ଆଶ୍ରୟସ୍ଥଳୀ ଥିଲା । ପାଣ୍ଡବମାନେ ଏହାରି ମଧ୍ୟରେ ଆତ୍ମଗୋପନ କରିଥିବା କଥା ଏଠାକାର ଆଦିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ଲୋକକଥାରୁ ପ୍ରମାଣ ମିଳେ । ରାମା ଓ ଭୀମାକୁ କୋୟାମାନେ ସେମାନଙ୍କର ଆଦିପୁରୁଷ ଭାବେ ଗ୍ରହଣ କରିଥିବା ସମସ୍ତେ ଜାଣନ୍ତି । ନିଜର ପୁଅ କିମ୍ୱା ଝିଅଟିଏ ଜନ୍ମ ହେଲେ ସେମାନଙ୍କୁ ରାମା, ରାମୀ, ଗଙ୍ଗା, ଗାଙ୍ଗୀ,ଅର୍ଜୁନ, ନକୁଳ, ଜଗନ୍ନାଥ ଆଦି ନାମରେ ସେମାନେ ନାମକରଣ କରିଥାନ୍ତି । ମାଘ ମାସରେ ଭୀମୁଡୁ ପର୍ବ ପାଳନ କରାଯାଇ ଭଗବାନ ଭୀମଙ୍କୁ ସେମାନଙ୍କର ପରିବାର ତଥା ଗ୍ରାମର ସୁରକ୍ଷା ପାଇଁ ପ୍ରାର୍ଥନା କରାଯାଏ । ଆଜି ବି କୋୟା

ସଂପ୍ରଦାୟର ଗ୍ରାମେ ଗ୍ରାମେ କେଉଁ ଆବହମାନ କାଳରୁ ରହିଛି ପାଣ୍ଡବଏରୁ (ପୋଖରୀ) । ଯାହାକୁ କି ଅଜ୍ଞାତବାସ ବେଳେ ପାଣ୍ଡବମାନେ ବ୍ୟବହାର କରୁଥିଲେ । ଏହି ମାଘ ମାସରେ ବଣ୍ଡାମାନେ ପାଟଖଣ୍ଡା ପର୍ବ ପାଳନ କରିଥାନ୍ତି । ମୁଦୁଲିପଡ଼ା ନିକଟସ୍ଥ ଏକ ବଟ ବୃକ୍ଷ କ୍ରୋଡ଼ରେ ଥିବା ଏକ ପ୍ରାଚୀନ ଖଣ୍ଡାକୁ ଏହି ସମୟରେ ପୂଜା କରାଯାଏ । ବିଶ୍ୱାସ କରାଯାଏ ଯେ ଅଜ୍ଞାତବାସ ପୂର୍ବରୁ ପାଣ୍ଡବମାନେ ଏହି ଠାରେ ନିଜର ଅସ୍ତ୍ର ଶସ୍ତ୍ର ଲୁଚାଇ ରଖିଥିଲେ ଓ ସେଠାରୁ ପରେ କାଢ଼ି ନେଲା ବେଳେ ଏହି ଖଣ୍ଡାଟିକୁ ଛାଡ଼ି ଦେଇ ଥିଲେ ।

କାନାମ୍‌ରାଜୁ, ବାଲାରାଜୁ, ପୋତୁରାଜୁ (କୃଷ୍ଣ, ଅର୍ଜୁନ ଓ ଭୀମ) ଏହି ତିନି ବଡ଼ ଦେବତାଙ୍କ ନାମରେ ପ୍ରତି ଦୁଇ ବର୍ଷକୁ ଥରେ ଅନୁଷ୍ଠିତ ହୋଇଥାଏ ବଡ଼ଯାତ୍ରା । ଏଠାରୁ ଆଦିବାସୀ ଜନଜୀବନରେ ପାଳିତ ପ୍ରାଚୀନ ପୂଜା ପାର୍ବଣ ସଂପର୍କରେ ଯଥେଷ୍ଟ ଧାରଣା ମିଳିଥାଏ । ଏହି ଯାତ୍ରାବେଳେ ପଡ଼ୋଶୀ ସୁକୁମାର ରାଜ୍ୟର ରାଜା ସ୍ୱତନ୍ତ୍ର ଅତିଥି ଭାବେ ଯୋଗଦାନ କରିଥାନ୍ତି ।

ପ୍ରସିଦ୍ଧ କବି ତୁଳସୀ ଦାସ ମଧ୍ୟ ଏହି ଦଣ୍ଡକରଣ୍ୟର ମାଲ୍ୟବନ୍ତ ଅଞ୍ଚଳରେ ଭ୍ରମଣ କରି ତାଙ୍କର ବିଶ୍ୱବିଖ୍ୟାତ ତୁଳସୀ ରାମାୟଣ ରଚନା ପାଇଁ ପ୍ରେରଣା ପାଇଥିଲେ । ସେ ଚିତ୍ରକୋଣ୍ଡା (ଚିତ୍ରକୂଟ) ଅଞ୍ଚଳରେ ଏକାନ୍ତ ସାଧନା କରି ପ୍ରଭୁ ରାମଚନ୍ଦ୍ରଙ୍କୁ ଧନୁଶର ଧାରଣ କରିଥିବା ଏକ ଆଦିବାସୀ ବାଳକ ରୂପେ ଦର୍ଶନ କରିଥିଲେ ।

ଚିତ୍ରକୋଣ୍ଡା ଅଞ୍ଚଳରେ ଦ୍ୱିତୀୟ ଲିଙ୍ଗରାଜ ଭାବେ ଶୋଭା ପାଉଥିବା ଏକ ପ୍ରାଚୀନ ଶୈବ ପୀଠ ଓ ଅନ୍ୟାନ୍ୟ ମନ୍ଦିର ବାଲିମେଳା ଜଳବିଦ୍ୟୁତ ଯୋଜନା କାର୍ଯ୍ୟକାରୀ ହେବା ପରେ ଜଳମଗ୍ନ ହୋଇଯାଇଛି ।

ଶୁଣାଯାଏ ଯେ ଯେତେବେଳେ ଶ୍ରୀଚୈତନ୍ୟଦେବ ନନ୍ଦପୁର ଆସିଥିଲେ ସେତେବେଳେ ସେଠାରୁ ମାତ୍ର ଅଳ୍ପ ଦୂରରେ ଥିବା ଏହି ପ୍ରସଦ୍ଧ ଶୈବପୀଠକୁ ବୁଲି ଦେଖିବାକୁ ଆସିଥିଲେ । ବୋଧହୁଏ ତାଙ୍କର ନନ୍ଦପୁର ଆସିବା ପଛରେ ଏହାକୁ ବୁଲି ଦେଖିବା ଏକ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏହି ଅଞ୍ଚଳକୁ ସେତେବେଳେ କମ୍ଭୁଦ୍ରୀ କୁହାଯାଉଥିଲା । ଏବଂ ଏହା ଏକ ଛୋଟ ରାଜ୍ୟ

ଭାବେ ପ୍ରତିଷ୍ଠା ଲାଭ କରିଥିଲା । ଏଠାରେ ଗଙ୍ଗ ବଂଶର ରାଜାମାନେ ରାଜୁତି କରୁଥିଲେ ।

୧୯୪୧ ମସିହାରେ କୋରାପୁଟର ପ୍ରଥମ ଇଂରେଜ କଲେକ୍ଟର ବେଲ୍ ସାହେବ ତାଙ୍କ ଗେଜେଟିୟରରେ ଉଲ୍ଲେଖ କରିଛନ୍ତି ଯେ-There is evidence that the wild forest country of Malkangiri has known a former civilization. In Kondakamberu there are two inscriptions recording a gift to the God Nilakantheswara by the Queen of Pandu Singh in the year 1376 AD. Kondakamberu is called Kambudriri.

ଜୟପୁର ରାଜ୍ୟର ନିର୍ମାତା ବିନାୟକ ଦେବ କାଶ୍ମୀର ଅଞ୍ଚଳରୁ ନନ୍ଦପୁର ଆସି ସେଠାକାର ରାଜକୁମାରୀ ଲୀଳାବତୀଙ୍କୁ ବିବାହ କରିଥିଲେ । ତାଙ୍କୁ ଏଥିପାଇଁ ଅନେକ ଅସୁବିଧା ଓ ବିଦ୍ରୋହର ସମ୍ମୁଖୀନ ହେବାକୁ ପଡ଼ିଥିଲା ସେ ଅନେକ ଗୁଡ଼ାଏ ଛୋଟ ଛୋଟ ରାଜ୍ୟ ଜୟ କରିଥିଲେ । ସେଥିରୁ ମାଲକାନଗିରିର କୁମ୍ଦ୍ରୀ ଅନ୍ୟତମ । ପ୍ରତ୍ୟେକ କାର୍ଯ୍ୟରେ ସାହାଯ୍ୟ କରି ଆସୁଥିବା ଲୀଳାବତୀଙ୍କ ମାମୁଁପୁଅ ଭାଇ ସିଙ୍ଗରାଜୁଙ୍କୁ କମ୍ଦ୍ରୀ ରାଜ୍ୟ ଭାର ଅର୍ପଣ କରାଯାଇଥିଲା । ନିଜର ପ୍ରିୟ ପତ୍ନୀ ଲୀଳାବତୀ ଓ ବନ୍ଧୁ ସିଙ୍ଗରାଜୁଙ୍କ ନାମ ଅନୁସାରେ ରାଜା ବିନାୟକଦେବ ଦୁଇଟି ନୂତନ ଗ୍ରାମ ନୀଳାକାମେରୁ ଓ ସିଙ୍ଗାରାଜୁଖୁଣ୍ଟା ଏହି ମାଲକାନଗିରି ଅଞ୍ଚଳରେ ସୃଷ୍ଟି କରିଥିଲେ ।କିଛି ବର୍ଷ ପୂର୍ବେ ନୀଳାକାମେରୁ ଠାରେ କେତେକ ପ୍ରାଚୀନ ଦେବାଦେବୀ ମୂର୍ତ୍ତି ମାଟି ତଳୁ ମିଳିଥିଲା ।

୧୪୦୦ ଖ୍ରୀଷ୍ଟାବ୍ଦ ଠାରୁ ୧୮୮୭ ପର୍ଯ୍ୟନ୍ତ ମାଲକାନଗିରିରେ ରାଜୁତି କରୁଥିବା ରାଜା ଓ ସେତେବେଳର ମନ୍ତ୍ରୀ -

| | ମାଲକାନଗିରି ର ରାଜାଙ୍କ ନାମ | ମନ୍ତ୍ରୀଙ୍କ ନାମ |
|---|---|---|
| ୧।। | ଭାଗୀ ପାତ୍ର | ଯୋଗୀ ରାଜୁ |
| ୨।। | କର୍ମୀସିଂହ ପାତ୍ର | ପାଣ୍ଡୁ ରାଜୁ |
| ୩।। | ବଳରାମ ପାତ୍ର | ଆପଲା ରାଜୁ |

| | | |
|---|---|---|
| ୪।। | ଜଗନ୍ନାଥ ପାତ୍ର | ନରସୁ ରାଜୁ |
| ୫।। | ବନମାଳୀ ପାତ୍ର | ଚନ୍ଦ୍ର ରାଜୁ |
| ୬।। | କିନ୍ନ ପାତ୍ର | ପୁଷ୍ପ ରାଜୁ |
| ୭।। | ମୁକୁନ୍ଦ ପାତ୍ର | ରାମଚନ୍ଦ୍ର ରାଜୁ |
| ୮।। | କୋଟା ସାମନ୍ତ ରାଓ | କାଳିଆ ଦାସ କଡ଼କୁ |
| ୯।। | ଗୋପୀନାଥ ପାତ୍ର | ରାଜମ୍ ରାଜୁ |
| ୧୦।। | ପୋତୁରାଜୁ ପାତ୍ର | କାନମ୍ ରାଜୁ |
| ୧୧।। | ହରି ପାତ୍ର | ରୋଗନାଦ ରାଜୁ |
| ୧୨।। | ବୀରସିଂହ ପାତ୍ର | ରାମେୟା ରାଜୁ |
| ୧୩।। | ପାଣ୍ଡୁ ପାତ୍ର | ଚେନ୍ନମ ରାଜୁ |
| ୧୪।। | ନରହରି ପାତ୍ର | ବାବାଲେନ୍ଦୁ ରାଜୁ |
| ୧୫।। | ଶୋଭାଚନ୍ଦ୍ର ପାତ୍ର | ଲକ୍ଷ୍ମୀ ରାଜୁ |
| ୧୬।। | ନରେନ୍ଦ୍ର ପାତ୍ର | ରଘୁ ରାଜୁ |
| ୧୭।। | ଚନ୍ଦ୍ରରାଜୁ ପାତ୍ର | ନୀଳାମ୍ବର ରାଜୁ |
| ୧୮।। | ଭାଗୀରଥି ପାତ୍ର | ଥାକୁ ରାଜୁ |
| ୧୯।। | ପରମାନନ୍ଦ ପାତ୍ର | ପୁରୁଷୋତ୍ତମ ରାଜୁ |
| ୨୦।। | ରାମନାଥ ପାତ୍ର | ମୁଙ୍ଗ ରାଜୁ |
| ୨୧।। | ପୁରୁଷୋତ୍ତମ ପାତ୍ର | ତ୍ରିଲୋଚନ ରାଜୁ |
| ୨୨।। | ରାମଚନ୍ଦ୍ର ପାତ୍ର | ଥାନ୍ନମ ରାଜୁ |
| ୨୩।। | କାନମ୍‌ରାଜୁ ପାତ୍ର | ଏରାମ୍ ରାଜୁ |
| ୨୪।। | ପାଣ୍ଡୁ ପାତ୍ର | ଚିମ୍ମା ରାଜୁ |
| ୨୫।। | ରାଣୀ ଭକ୍ମା | ଏରାମ୍ ରାଜୁ |
| ୨୬।। | କାଙ୍ଗରା ଦେବୀ | ସନ୍ୟାସୀ ରାଜୁ |

*(ମାଲକାନଗିରି ରାଜବଂଶୀୟ ସ୍ୱର୍ଗତ ଖଣ୍ଡେଶ୍ୱର ପାତ୍ରଙ୍କ ଠାରୁ ପ୍ରାପ୍ତ ଏକ ମୂଳ ତେଲୁଗୁ ଲେଖାରୁ ଏହି ନାମ ତାଲିକା ସଂଗୃହୀତ ।)*

ପୂର୍ବେ ମାଲକାନଗିରି ରାଜ୍ୟ ଚାରୋଟି ମୁଠାରେ ବିଭକ୍ତ ଥିଲା । ମୋଟୁ, ପଡ଼ିଆ, ପଦ୍ମଗିରି ଓ କୋରୁକୋଣ୍ଡାରେ ନିଯୁକ୍ତି ପାଇଥିଲେ ଚାରିଜଣ ମୁଠାଦାର । ରାଜାଙ୍କ ଠାରୁ ନିଯୁକ୍ତି ପାଇଥିବା ମୁଠାଦାରମାନଙ୍କ ଅଧୀନରେ

ଅନେକ ଗୁଡ଼ାଏ ଗାଁ ରହିଥିଲା । ଗାଁ ମୁଖିଆଙ୍କୁ କୁହାଯାଉଥିଲା ପେଦା । ମୁଠାଦାର ଓ ପେଦାଙ୍କ ମୃତ୍ୟୁ ପରେ ସେମାନଙ୍କ ପୁଅକୁ ହିଁ ମୁଠାଦାର ବା ପେଦା କରାଯାଉଥିଲା ।

ଦେବ ଡଙ୍ଗର ପ୍ରକୃତିର ଏକ ବିଚିତ୍ର ସୃଷ୍ଟି । କେହି କେହି ଏହାକୁ ମାଲ୍ୟବନ୍ତ ପର୍ବତ ତଥା ଗୋଇ ପର୍ବତ ନାମରେ ନାମିତ କରିଥାନ୍ତି । ଗୋଇ ପର୍ବତକୁ ଲାଗିଛି ଡ଼ଙ୍ଗା ପାହାଡ଼ । ଏହି ସବୁ ଅଞ୍ଚଳରେ ଦେବତାମାନେ ବାସ କରୁଥିବା କଥା ଲୋକେ ବିଶ୍ୱାସ କରନ୍ତି । ପାହାଡ଼ର ଶୀର୍ଷ ଦେଶରେ ଗୋଟିଏ ପଥର ଗୋଇ ସାପ ଭଳି ଦେଖାଯାଉଥିବାରୁ ଏହାକୁ ଗୋଇ ପର୍ବତ କୁହାଯାଏ । ଏହି ଗୋଇ ପର୍ବତ ପଛରେ ରହିଛି ଏକ କିମ୍ବଦନ୍ତୀ । ଏକଦା ଦୁଇ ଜଣ ବୁଢ଼ାବୁଢ଼ୀ ଏଠାରେ କିଛି କାଠପତ୍ର ସଂଗ୍ରହ କରୁଥିବା ବେଳେ ସେମାନେ ପୂର୍ବରୁ ସଂଗ୍ରହ କରିଥିବା କିଛି ମହୁଲକୁ ଏକ ବଡ଼ ପଥର ଉପରେ ଥୋଇ ଦେଇଥିଲେ । ଘରକୁ ଫେରିବା ବେଳେ ଦେଖିଲେ ଯେ ତାହା ପଥର ପାଲଟି ଯାଇଛି । ସେମାନେ ଯେତେବେଳେ ହାତରେ ଠେଲିବା ପାଇଁ ଚେଷ୍ଟା କଲେ, ସେତେବେଳେ ଏକ ଶୂନ୍ୟ ବାଣୀ ହେଲା, ଯେଉଁଦିନ ଏହି ମହୁଲ ପଥର ଘୁଞ୍ଚି ଯିବ ସେହି ଦିନ ମାଲକାନଗିରି ଜଳମଗ୍ନ ହୋଇଯିବ । ଆଜି ବି ଏହା ମହୁ-ଲଟକା ପଥର ଭାବରେ ସୁପରିଚିତ ଏବଂ କିଛି ବର୍ଷ ତଳେ ଏହାରି ନିକଟରେ ପ୍ରଭୁ ମଲ୍ଲିକେଶ୍ୱର ଆବିର୍ଭାବ ହୋଇ ପୂଜା ପାଉଛନ୍ତି ।

ଦେବ ଡଙ୍ଗରସ୍ଥ ଆମ୍ବତୋଟା(ସଦର ବସନି ଆମ୍ବତୋଟା)ରେ ମାଲକାନଗିରି ରାଜ୍ୟର ସମସ୍ତ ମୁଠାଦାରମାନଙ୍କର ସମାବେଶ ହୋଇଥାଏ । ଏଠାରେ ଦଶହରା ପର୍ବ ବେଶ୍ ଧୁମଧାମରେ ପାଳିତ ହୋଇ ଏକ ସ୍ୱତନ୍ତ୍ର ଦଶହରା ଦରବାର ବସେ । ମାଣିକେଶ୍ୱରଙ୍କୁ ଧୂପ, ଦୀପ ଓ ନୈବେଦ୍ୟ ଅର୍ଚ୍ଚନା କରାଯାଇ ଛେଳି କିମ୍ବା ଘୁଷୁରିଟିଏ ମାଣିକେଶ୍ୱରୀଙ୍କୁ ଅର୍ପଣ ପୂର୍ବକ ବଳି ଦିଆଯାଏ । ଭୋଜିଭାତ ଖିଆ ସରିବା ପରେ ରାଜା ସବୁ ହୁକୁମନାମା ଜାରି କରନ୍ତି । ସେହିଠାରେ କର ଆଦାୟ କରାଯିବା ସହିତ ଦଣ୍ଡବିଧାନ ଭଳି ଗୁରୁତ୍ୱପୂର୍ଣ୍ଣ କଥା ବି ସେଠାରେ ନିର୍ଦ୍ଧାରିତ ହୁଏ । ଦଶହରା ବ୍ୟତୀତ ଅନ୍ୟ ଦିନମାନଙ୍କରେ ମଧ୍ୟ ଏହି ବୈଠକ ବସିଥାଏ । ସେଥିପାଇଁ ରାଜା ଆଗରୁ ଦିନ ଧାର୍ଯ୍ୟ କରନ୍ତି ଓ ସମସ୍ତଙ୍କ ପାଖକୁ ଖବର ଦିଆଯାଏ ।

ମାଲକାନାଗିରିର ଶେଷ ରାଣୀଙ୍କ ନାମ ଥିଲା-ବାଙ୍ଗାରୁ ଦେବୀ । ସେ ୧୮୫୫ ମସିହାରୁ ୧୮୭୨ ମସିହା ପର୍ଯ୍ୟନ୍ତ ମାଲକାନଗିରିରେ ରାଜକାର୍ଯ୍ୟ ସଂପାଦନ କରିଥିଲେ । ରାଣୀ ବାଙ୍ଗାରୁ ଦେବୀ ୧୮୧୫ ମସିହା ଦଶହରା ଦିନ ଜନ୍ମ ଗ୍ରହଣ କରିଥିଲେ । ସେ ଅତି ସୁନ୍ଦରୀ ଥିବା ସହିତ ଅବିବାହିତା ରହି ରାଜକାର୍ଯ୍ୟ ସଂପାଦନ କରୁଥିଲେ । ତାଙ୍କ ଦେହ ସୁନା ଭଳି ଝଟକୁ ଥିବାରୁ ତାଙ୍କ ନାମକରଣ ଏପରି ହୋଇଥିଲା । ସେ ରାଜା ପାଣ୍ଡୁ ପାତ୍ର ତଥା ରାଣୀ ଭମ୍ମାଙ୍କ ଏକ ମାତ୍ର ଅଲିଅଳ କନ୍ୟା ଥିଲେ ।

ପିତା ପାଣ୍ଡୁ ପାତ୍ର (ଦାଢ଼ିଆ ରଜା) ୧୮୩୫ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କରିଥିବାବେଳେ ବାଙ୍ଗାରୁ ଦେବୀଙ୍କ ମାଆ ଭମ୍ମା ଅନେକ ସମୟରେ ଅନ୍ୟମନସ୍କା ଓ ରୋଗ ଗ୍ରସ୍ତ ରହୁଥିବାରୁ ରାଜକୁମାରୀ ବାଙ୍ଗାରୁଦେବୀଙ୍କୁ ହିଁ ରାଜକାର୍ଯ୍ୟ ବୁଝିବାକୁ ପଡୁଥିଲା । ୧୮୩୮ ମସିହାରେ ଚିନ୍ତା ଓ ଭଗ୍ନ ହୃଦୟରେ ରାଣୀ ଭମ୍ମାଙ୍କର ମୃତ୍ୟୁ ହୋଇଯିବାରୁ ବାଙ୍ଗାରୁ ଦେବୀ ମାଲକାନଗିରିର ରାଣୀ ଭାବେ ସିଂହାସନ ଆରୋହଣ କରିଥିଲେ ।

ସେ ନିଜର ରାଜୁତି ସମୟରେ 'ମୁଫତର ଓ ସାୟାର' ନାମକ ଦୁଇଟି କର ବସାଇଥିଲେ । ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଏକ ବିଶାଳ କୋୟା ସୈନ୍ୟ ବାହିନୀ ମଧ୍ୟ ଗଠନ କରିଥିଲେ । ସେତେବେଳର ଜୟପୁରର ରାଜା ଦ୍ୱିତୀୟ ବିକ୍ରମାଦିତ୍ୟଙ୍କ ମୃତ୍ୟୁ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ତୃତୀୟ ରାମଚନ୍ଦ୍ର ଦେବ ୧୮୬୦ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ସେହି ବର୍ଷ ଚମ୍ପା (ଚମ୍ପାଖାରି) ନିକଟରେ ରାଣୀ ବାଙ୍ଗାରୁ ଦେବୀଙ୍କ ଗରିଲା ବାହିନୀ ସହ ତାଙ୍କର ଯୁଦ୍ଧ ହୋଇଥିଲା । ଏଥିରେ ରାମଚନ୍ଦ୍ର ଦେବ ବାଙ୍ଗାରୁ ଦେବୀଙ୍କ ଗରିଲା ବାହିନୀ ସହ ଯୁଦ୍ଧରେ ପଛ ଘୁଞ୍ଚା ଦେଇ ଜୟପୁର ଫେରି ଯାଇଥିଲେ । ସବୁବେଳେ ଶତ୍ରୁ ଆତଙ୍କ ଭିତରେ ଗତି କରୁଥିବାରୁ ମାଲକାନଗିରି ରାଜାଙ୍କର କୌଣସି ନିର୍ଦ୍ଦିଷ୍ଟ ରାଜବାଟୀ ନିର୍ମାଣ ହୋଇପାରି ନଥିଲା ବୋଲି ଅନୁମାନ କରାଯାଏ । ମାଲକାନଗିରିସ୍ଥ ଭୈରବ ମନ୍ଦିର ସମ୍ମୁଖ ପାହାଡ଼ରେ ଏକ ଅସ୍ଥାୟୀ ଉଆସ ଓ ଦୁର୍ଗ ନିର୍ମାଣ ହୋଇଥିଲା । ତାହାର ଭଗ୍ନାବଶେଷ ଆଜି ଯାଏଁ ରହିଛି ।

ଚନ୍ଦ୍ର ବଂଶୀୟ ଏହି ରାଜାମାନେ ପ୍ରଥମେ ମଧ୍ୟପ୍ରଦେଶର ରେଓ୍ୱା ଅଞ୍ଚଳରୁ ଆସି ଅନେକ ଦିନ ଏଠାରେ ଶାସନ କରିଥିଲେ। ଏମାନଙ୍କୁ କୌଣସି ଶତ୍ରୁ ବା ଇଂରେଜମାନେ ସହଜରେ ପରାଜୟ କରିପାରିନଥିଲେ । ପରିଶେଷରେ ରାଣୀ ବାଙ୍ଗାରୁ ଦେବୀ ୧୮୭୨ ମସିହାରେ ଇଂରେଜ ସରକାରଙ୍କ ଦ୍ୱାରା ଗାଦି ଚ୍ୟୁତ ହେବା ପରେ ଏହା ସିଧା ସଳଖ ବ୍ରିଟିଶ ଶାସନାଧୀନରେ ରହିଥିଲା । ୧୮୭୨ ପରେ ଦୀର୍ଘ ଆଠ ବର୍ଷ କାଳ ବାଙ୍ଗାରୁ ଦେବୀ କ୍ଷମତାକୁ ଆସିବା ପାଇଁ ଚେଷ୍ଟା କରି ବିଫଳ ହୋଇଥିଲେ । ୧୮୮୧ ମସିହା ପ୍ରାରମ୍ଭରେ ଜୟପୁର ରାଜାଙ୍କ ଅନୁରୋଧ କ୍ରମେ ସେ ଜୟପୁର ଠାରେ ୪ ବର୍ଷ ଅବସ୍ଥାନ କରିଥିଲେ। ୭୦ ବର୍ଷ ବୟସରେ ତଥା ୧୮୮୫ ମସିହାରେ ଜୟପୁର ଠାରେ ତାଙ୍କର ଦେହାନ୍ତ ହୋଇଥିଲା । କୋରାପୁଟ ଗେଜେଟିୟରରେ ଇଂରେଜ କଲେକ୍ଟର ବେଲ୍ ସାହେବ ଲେଖିଛନ୍ତି-"....but the four most important namely those at Bisamkatak, Kalyansingapur, Nawarangpur and Malkangiri survived until Quite recent times......... . The late ruler of Malkangiri the Rani Bangra Devi was deposed in 1872........."

୧୮୮୦ ମସିହା ବେଳକୁ ତାମା ଦୋରା ନାମକ ଜଣେ ବୀର କୋୟା ଯୁବକ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ି ପଡ଼ିଥା ଓ ମୋଟୁ ଅଞ୍ଚଳରେ ନିଜକୁ ରାଜା ବୋଲି ଘୋଷଣା କରି ଇଂରେଜମାନଙ୍କ ସହ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଲଢ଼ି ମୃତ୍ୟୁବରଣ କରିଥିଲେ । ତାଙ୍କୁ ମାରିବା ପାଇଁ ସାଧାରଣ ପୋଲିସ ପାରି ନଥିଲେ। ଏଥିପାଇଁ ହାଇଦରାବାଦରୁ ମିଲିଟାରୀ ପୋଲିସଙ୍କୁ ଡକା ଯାଇଥିଲା। ସ୍ୱାଧୀନତା ସଂଗ୍ରାମରେ ମାଲକାନଗିରି ମାଟିର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଏଠାକାର ଜନସାଧାରଣ ତଥା ଆଦିବାସୀମାନେ ଯେଭଳି ଭାବରେ ଦେଶ ସ୍ୱାଧୀନ ପାଇଁ ନିଜ ଜୀବନକୁ ବଳି ଦେଇଛନ୍ତି ତାହା ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ। ବାଙ୍ଗାରୁ ଦେବୀ, ତାମା ଦୋରା, ଆଲୁରି ସୀତାରାମ ରାଜୁ ଓ ବୀର ଲକ୍ଷ୍ମଣ ନାୟକଙ୍କ ଭଳି ଦେଶପ୍ରେମୀମାନେ ଏହି ଅଞ୍ଚଳରୁ ଇଂରେଜ ଶାସନ ବିରୁଦ୍ଧରେ ନିସ୍ୱାର୍ଥପର ଭାବରେ ଦକ୍ଷତାର ସହିତ ଲଢ଼ି ନିଜ ଜୀବନକୁ ଦେଶ ପାଇଁ ଉତ୍ସର୍ଗ କରିଦେଇଛନ୍ତି । ସେମାନଙ୍କ ସ୍ମୃତି ରକ୍ଷା ପାଇଁ ସମସ୍ତେ ସଚେତନ ହେବା ସହିତ ସେମାନଙ୍କର ଦେଶ ପ୍ରୀତିକୁ ଆମ ଜୀବନ କ୍ଷେତ୍ରରେ ପ୍ରୟୋଗ କରିବା ଉଚିତ । ❖❖❖

# ମାଲକାନଗିରିର କ୍ରମବିକାଶ

ବଣ ଜଙ୍ଗଲ ଏବଂ ପାହାଡ଼ ପର୍ବତ ଘେରା ମାଲକାନଗିରିରେ ଚିରସ୍ରୋତା ସିଲେରୁ ଓ ସାବେରୀ ନଦୀ କୂଳରେ ପ୍ରାଚୀନ ସଭ୍ୟତା ଗଢ଼ି ଉଠିଥିବା ପ୍ରମାଣ ମିଳେ । ବର୍ଷ ବର୍ଷ ଧରି ଏଠାରେ ଅନେକ ଦୁର୍ଲଭ ଜୀବଜନ୍ତୁ, ପଶୁପକ୍ଷୀ ଆଦି ବିଚରଣ କରୁଥିଲେ । ଏହି ଆଦିବାସୀ ଅଞ୍ଚଳ ଅନେକ ଦିନ ଧରି ଏକ ଅନୁନ୍ନତ ଅଞ୍ଚଳ ଭାବରେ ପରିଗଣିତ ହୋଇଥିଲା । ବାହାରୁ କୌଣସି ଲୋକ ଏଠାରେ ରହିବା ପାଇଁ ଉପଯୁକ୍ତ ମନେ କରୁ ନଥିଲେ । ୧୩୦୦ ଶତାବ୍ଦୀ ବେଳକୁ ଅଳ୍ପ କିଛି ଲୋକ ଅନ୍ୟ ସ୍ଥାନରୁ ଆସି ଏଠାରେ ବସବାସ କରିବାକୁ ଲାଗିଲେ ।

ଏହି ଅଞ୍ଚଳରେ କୌଣସି ରାସ୍ତା ଘାଟର ସୁବିଧା ନଥିଲା । ଲୋକେ ଚେରମୂଳି ତଥା ଝାଡ଼ଫୁଙ୍କ କରି ରୋଗ ଉପସମ କରୁଥିଲେ । ଜଣେ ଅସୁସ୍ଥ ହେଲେ ବା ଅକାଳରେ ମୃତ୍ୟୁ ବରଣ କଲେ ତାକୁ କେହି ପାଂଗି ଦେଇଛି ବୋଲି ମନେ କରାଯାଉଥିଲା । ୧୮୭୨ ମସିହା ପର୍ଯ୍ୟନ୍ତ ଏଠାରେ କୌଣସି ପକ୍କା ଘର ନିର୍ମାଣ କରାଯାଇ ନ ଥିଲା । ସେହି ବର୍ଷ ମାଲକାନଗିରି ରାଣୀ ବାଙ୍ଗାରୁ ଦେବୀଙ୍କୁ ଗାଦିଚ୍ୟୁତ କରିବା ପରେ ଏହା ସିଧାସଳଖ ଇଂରେଜମାନଙ୍କ ଶାସନାଧୀନରେ ରହିଲା । ଇଂରେଜମାନେ ଲୋକଙ୍କୁ ବେଠି ଖଟାଇ ଚାରିଆଡ଼େ ରାସ୍ତା ନିର୍ମାଣ କାର୍ଯ୍ୟ ଆରମ୍ଭ କରାଇଥିଲେ । ସେମାନଙ୍କ ପାଇଁ ରାସ୍ତାର କଡ଼େ କଡ଼େ ସ୍ୱଳ୍ପ ମୂଲ୍ୟରେ କିଛି ବିଶ୍ରାମ ଭବନ ନିର୍ମାଣ କରାଯାଇଥିଲା । ୧୯୪୨ ମସିହା ବେଳକୁ ମାଲକାନଗିରି ସଦରରେ ତହସିଲ୍ କାର୍ଯ୍ୟାଳୟ ନିର୍ମାଣ କରାଯାଇଥିଲା । ସେତେବେଳକୁ ଏଠାକାର ଲୋକେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଚାଲି ଚାଲି ବା ଶଗଡ଼ରେ ଯାତାୟାତ କରୁଥିଲେ । ଇଂରେଜ କର୍ମଚାରୀମାନଙ୍କୁ ଲୋକମାନେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଏକ ପ୍ରକାର ପାଲିଙ୍କିରେ ବୋହି ବୋହି ନେଉଥିଲେ ।

ମାଲିମକଦମା ଓ କୋର୍ଟ କଚେରୀ ପାଇଁ ଏଠାକାର ଲୋକମାନଙ୍କୁ ବିଶାଖାପାଟଣାକୁ ଯିବାକୁ ପଡ଼ୁଥିଲା । ମୋଟାମୋଟି ଭାବରେ ଏହି ଅଞ୍ଚଳ ଅନେକ ଦିନ ପର୍ଯ୍ୟନ୍ତ ବାହ୍ୟ ଜଗତରୁ ବିଚ୍ଛିନ୍ନ ହୋଇ ରହିଥିଲା । ସେଥିପାଇଁ ଏହାର ବିକାଶ ଆଶାଜନକ ଭାବେ ହୋଇ ପାରି ନ ଥିଲା ।

୧୯୫୨ ମସିହା ବେଳକୁ ଜୟପୁରରୁ ମାତ୍ର ଗୋଟିଏ ବସ୍ ଆସି ସେହିଦିନ ଏଠାରୁ ଫେରି ଯାଉଥିଲା । କଟକ ଓ ଗଞ୍ଜାମ ପ୍ରଭୃତି ଜିଲ୍ଲାରୁ ଲୋକେ କଣ୍ଟ୍ରାକଟରୀ (ଠିକାଦାରୀ) କାମ ଓ ଚାକିରୀ ଉଦ୍ଦେଶ୍ୟରେ ଆସି କ୍ରମେ ଏଠାରେ ସ୍ଥାୟୀ ଭାବରେ ବସବାସ କରିବାକୁ ଲାଗିଲେ । ଅନ୍ୟ ପ୍ରଦେଶରୁ କିଛି ଲୋକ ବାଣିଜ୍ୟ କରିବା ପାଇଁ ଆସି ମଧ୍ୟ ଏଠାରେ ସ୍ଥାୟୀ ଭାବରେ ରହିଗଲେ । ଅନେକ ଦିନ ପରେ ଏହି ଜିଲ୍ଲାର ଆଦିବାସୀମାନେ ମଧ୍ୟସ୍ଥିମାନଙ୍କ ମାଧ୍ୟମରେ ଆସାମର ଚା ବଗିଚାରେ କାମ କରିବାକୁ ଯାଉଥିଲେ । ସେତେବେଳକୁ ଏଠାରେ ଶିକ୍ଷାଦାନ ପାଇଁ ବିଶେଷ ବିଦ୍ୟାଳୟ ନ ଥିଲା । ମାଲକାନଗିରି ହାଇସ୍କୁଲ ଓ ଅଳ୍ପ କେତୋଟି ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ କିଛି ପିଲା ପାଠ ପଢ଼ୁଥିଲେ । ବାଲିମେଳା ବିଦ୍ୟୁତ୍ ପରିକଳ୍ପନା ଓ ଦଣ୍ଡକାରଣ୍ୟ ଯୋଜନା ଯୋଗୁଁ ୧୯୫୮ ମସିହା ପରଠାରୁ ବିଦ୍ୟାଳୟ ସଂଖ୍ୟା କ୍ରମେ ବୃଦ୍ଧି ପାଇଲା ।

୧୯୬୨ ମସିହା ଜାନୁଆରୀ ମାସ ୧ ତାରିଖରେ ଏହା ଏକ ସବ୍‌ଡ଼ିଭିଜନ ଭାବେ ଗଠିତ ହେବା ପରଠାରୁ ଏଠାରେ ଜଣେ ସବ୍‌ଡ଼ିଭିଜନାଲ ଅଫିସର(ସବ୍‌କଲେକ୍ଟର) ନିଯୁକ୍ତି ପାଇ ଅବସ୍ଥାନ କରିବାକୁ ଲାଗିଲେ । ଏହା ସହିତ ୧୯୬୨ ମସିହାରେ ପ୍ରଥମ ସେଟେଲ୍‌ମେଣ୍ଟ କାମ ମାଲକାନଗିରି ଅଞ୍ଚଳରେ ଆରମ୍ଭ ହୋଇଥିଲା । ସେ ସମୟରେ ମାତ୍ର ଆଠ ଜଣକୁ ସ୍ଥାୟୀ ପଟ୍ଟା ପ୍ରଦାନ କରାଯାଇଥିଲା ଏବଂ ପୁରୁଣା ସହରକୁ କେବଳ ଦଖଲ ନୋଟ୍‌ରେ (ଖାତା ନଂ ୩୪୯) ରଖାଗଲା । ପଟ୍ଟା ଜାଗା ଅଭାବରୁ ଏଠାରେ ଜବରଦଖଲକାରୀଙ୍କ ସଂଖ୍ୟା ଅଧିକ ।

ଆଦିବାସୀ ଅଞ୍ଚଳରେ ଛୋଟପିଲାମାନେ ଆବାସିକ ବିଦ୍ୟାଳୟରେ ପଢ଼ିବା ପାଇଁ ଅଧିକ ପସନ୍ଦ କରନ୍ତି । ଓଡ଼ିଶା ସରକାରଙ୍କ ସମାଜ ଓ

ଗ୍ରାମମଙ୍ଗଳ ବିଭାଗ ତରଫରୁ ପ୍ରତିଷ୍ଠିତ ଆବାସିକ ସେବାଶ୍ରମଗୁଡ଼ିକ ଆଦିବାସୀ ପିଲାମାନଙ୍କୁ ଶିକ୍ଷାଦାନ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିପାରିଛି । ୧୯୮୧ ମସିହାରେ ମାଲକାନଗିରି ମହାବିଦ୍ୟାଳୟ ଓ ପରେ ବାଲିମେଳା ବିଜ୍ଞାନ ମହାବିଦ୍ୟାଳୟ ସ୍ଥାନୀୟ ଜନସାଧାରଣଙ୍କ ସହଯୋଗରେ ଗଠିତ ହୋଇଥିଲା । ୧୯୯୨ ମସିହାରେ ଏହା ନୂତନ ଜିଲ୍ଲା ଭାବେ ଗଠିତ ହେବା ପର ଠାରୁ ବିଭିନ୍ନ ଅଞ୍ଚଳରେ ମହାବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା । ଓଡ଼ିଶାର ଭୂତପୂର୍ବ ଉପ-ବାଚସ୍ପତି ଶ୍ରୀଯୁକ୍ତ ପ୍ରହ୍ଲାଦ ଦୋରାଙ୍କ ଚେଷ୍ଟାରେ ଗୋବିନ୍ଦପାଲୀ ଭଳି ଏକ ଅନୁନ୍ନତ ଅଞ୍ଚଳରେ ମହାବିଦ୍ୟାଳୟଟିଏ ସ୍ଥାପିତ ହୋଇ ସରକାରୀ ସ୍ୱୀକୃତି ଲାଭ କରି ସୁଚାରୁ ରୂପେ ପରିଚାଳିତ ହେଉଛି ।

ପୂର୍ବରୁ କାର୍ଯ୍ୟକାରୀ ହେଉଥିବା କେନ୍ଦ୍ର ସରକାରଙ୍କ ପରିଚାଳିତ ଦଣ୍ଡକାରଣ୍ୟ ଯୋଜନାକୁ ୧୯୮୮ ମସିହାରେ ପରିସମାପ୍ତି ଘୋଷଣା କରାଗଲା । କିଛି ପାଣି ସହିତ ଏହି ଯୋଜନାର ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତିକୁ ରାଜ୍ୟ ସରକାରଙ୍କୁ ହସ୍ତାନ୍ତର କରାଗଲା । ସେଥି ମଧ୍ୟରୁ ମାଥିଲି ଠାରେ ଥିବା ଯକ୍ଷ୍ମା ହସପିଟାଲ, ମାଲକାନଗିରିର ଜୋନାଲ ହସପିଟାଲ୍ ସମେତ ଅନେକ ଚିକିତ୍ସାଳୟ, ଅନେକ ବିଦ୍ୟାଳୟ ଓ ସତୀଗୁଡ଼ା ଜଳସେଚନ ପ୍ରକଳ୍ପ ପ୍ରମୁଖ ପ୍ରଧାନ । ୧୯୯୦ ମସିହାରେ ଏଠାରେ ଏକ ନବୋଦୟ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ କିଛି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିବିଶେଷଙ୍କ ପାଇଁ ଏହାକୁ କୋଲାବନଗରକୁ ଉଠାଇ ନିଆଗଲା । ୧୯୭୭ ମସିହାରେ ଶ୍ରୀ ରୁଦ୍ର ଚରଣ ମହାନ୍ତି ମାଲକାନଗିରିସ୍ଥ ପୁରୁଣା ଶିବାଳୟର ପୁନଃ ନିର୍ମାଣ କରାଇଥିଲେ । ୧୯୯୫ ମସିହାରେ ଲୋକପ୍ରିୟ ପ୍ରଶାସକ ଶ୍ରୀ ଗଦାଧର ପରିଡ଼ାଙ୍କ ଚେଷ୍ଟାରେ ମାଲକାନଗିରି ଠାରେ ଥିବା ଜଗନ୍ନାଥ ମନ୍ଦିରର ପୁନଃ ନିର୍ମାଣ କରା ଯାଇଥିଲା । ତା ସହିତ ଶ୍ରୀଯୁକ୍ତ ପରିଡ଼ା ମୋଟୁ ଠାରେ ମଧ୍ୟ ଏକ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ । କୋରୁକୋଣ୍ଡାର ଶୁବଳୟା ପାହାଡ଼ ତଳେ ଥିବା ପ୍ରାଚୀନ ଶିବ ଲିଙ୍ଗ ନିକଟରେ ୧୯୭୪ ମସିହାରେ ଏଠାକାର ତତକାଳୀନ ପ୍ରଶାସକ ବାଉରୀବନ୍ଧୁ ମହାପାତ୍ର ଏକ ମନ୍ଦିର ନିର୍ମାଣ କରାଇଥିଲେ । ବାଲିମେଳା ଠାରେ ସେଠାକାର କର୍ମଚାରୀଙ୍କ ଦ୍ୱାରା ଏକ ବୃହଦ ଶିବାଳୟ ନିର୍ମିତ ହୋଇଥିଲା । ୧୯୭୭ ମସିହାରେ ଏମ୍.ଭି.-୪୯

(କାମ ଓ୍ଵାଡ଼ା) ନିକଟରେ ମାଟି ତଳୁ ବହୁ ପୁରାତନ ଶିବପାର୍ବତୀ ମୂର୍ତ୍ତି ଓ ଲିଙ୍ଗ ଉଦ୍ଧାର କରାଯାଇଥିଲା । ଶିବରାତ୍ରୀ ଦିନ ଏଠାରେ ପ୍ରବଳ ଜନସମାଗମ ହୋଇ ଥାଏ ।

ବାସ୍ତବିକ ୧୯୯୨ ମସିହାରେ ଏହା ଏକ ଜିଲ୍ଲାରେ ପରିଣତ ହେବା ପରେ ସ୍ୱାସ୍ଥ୍ୟ ଓ ଶିକ୍ଷାର ଯଥେଷ୍ଟ ଉନ୍ନତି ଘଟିଛି । ଲୋକମାନେ ଜିଲ୍ଲା ପ୍ରଶାସନର ନିକଟତର ହୋଇ ପାରିଛନ୍ତି । ଚାରିଆଡ଼େ ଜିଲ୍ଲାସ୍ତରୀୟ ମୁଖ୍ୟ କାର୍ଯ୍ୟାଳୟମାନ ପ୍ରତିଷ୍ଠା ହୋଇ କାର୍ଯ୍ୟ ଆରମ୍ଭ କଲା । ଏହି ଜିଲ୍ଲା ପାଇଁ ଜଣେ ଜିଲ୍ଲାପାଳ, ଏସ୍.ପି., ଓ ଜିଲ୍ଲା ସ୍ୱାସ୍ଥ୍ୟ ଅଧିକାରୀ ନିଯୁକ୍ତି ପାଇଲେ । ଫଳରେ ଜିଲ୍ଲାର ସବୁ କ୍ଷେତ୍ରରେ ଅଭୂତପୂର୍ବ ବିକାଶ ସାଧିତ ହେଲା । ଫଳରେ ଜନସାଧାରଣ ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ରମରୁ ସୁଫଳ ତଥା ନ୍ୟାୟ ପାଇବା ପାଇଁ ସୁଯୋଗ ପାଇ ପାରିଲେ ।

ପଛୁଆ ତଥା ଅନଗ୍ରସର ମାଲକାନଗିରିରେ ୧୯୬୭ ମସିହାରେ ନକସଲ୍ ନେତା ନାଗଭୂଷଣଙ୍କ ଦ୍ୱାରା ଏଠାରେ ନକସଲପନ୍ଥୀ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଜିଲ୍ଲାର ନକସଲ୍ ଉପଦ୍ରୁତ ଅଞ୍ଚଳରେ ରାସ୍ତାଘାଟ ସ୍ୱାସ୍ଥ୍ୟ ଓ ଶିକ୍ଷା ଭଳି ସମସ୍ୟାକୁ ଧ୍ୟାନ ଦେଇ କାର୍ଯ୍ୟରତ କର୍ମଚାରୀଙ୍କୁ ସ୍ୱତନ୍ତ୍ର ସୁବିଧା, ଭତ୍ତା ତଥା ଅନ୍ୟାନ୍ୟ ଆନୁସଙ୍ଗିକ ପ୍ରୋତ୍ସାହନ ନ ଦେଲେ ଏହାର ଉନ୍ନତି ଅସମ୍ଭବ ବୋଲି ସମସ୍ତେ ଅନୁଭବ କଲେଣି ।

୧୯୯୫ରେ ପରିଚାଳିତ ଜିଲ୍ଲା ସାକ୍ଷରତା କାର୍ଯ୍ୟକ୍ରମ ଏକ ଫଳପ୍ରଦ ପଦକ୍ଷେପ ହୋଇଥିଲେ ସୁଦ୍ଧା, କେତେକ ପରିଚାଳନାଗତ ତ୍ରୁଟି ଯୋଗୁଁ ଏହାର ସୁଫଳ କାଗଜ କଲମରେ ରହିଗଲା ।

୧୯୯୮ ମସିହାରୁ ଏହା କେ.ବି.କେ ଉନ୍ନୟନ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥିବାରୁ ଅନେକ ଜନକଲ୍ୟାଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଓଡ଼ିଶାର ଜଣେ ସୁନାମଧନ୍ୟ ପ୍ରଶାସକ ହୃଷିକେଶ ପଣ୍ଡା ଏହାର ଦାୟିତ୍ୱରେ ଅଛନ୍ତି । ଏହି ଯୋଜନା ଫଳରେ ବିଶେଷ କରି ଆଦିବାସୀମାନେ ଉପକୃତ ହେବାର ଆଶା କରାଯାଏ ।

ଏଠାରୁ ବାଉଁଶ ନିଆଯାଇ ଜୟପୁର ସହରରେ କାଗଜ ତିଆରି ହେଉଛି । ଏ ପର୍ଯ୍ୟନ୍ତ ଏଠାରେ କୌଣସି ଶିଳ୍ପ ପ୍ରତିଷ୍ଠା କରାଯାଇ ପାରି ନାହିଁ । ପଡ଼ିଆ ଅଞ୍ଚଳରେ ପ୍ରସ୍ତାବିତ ସିମେଣ୍ଟ କାରଖାନା ଏସିଆର ସର୍ବ ବୃହତ ହେବ ବୋଲି ଅଟକଳ କରାଯାଉଛି । ରେଳ ଯୋଗାଯୋଗ ସାଙ୍ଗକୁ ମୋଟୁ ଠାରେ ସାବେରୀ ନଦୀ ଉପରେ ଆନ୍ଧ୍ରପ୍ରଦେଶକୁ ଯୋଗ କରୁଥିବା ଏକ ସେତୁ ନିର୍ମାଣ ହୋଇପାରିଲେ ଏହା ଏକ ଆଗୁଆ ଜିଲ୍ଲା ହୋଇ ବାହାରି ପାରିବ । ଅନେକ ଦିନ ଧରି ସରକାରଙ୍କ ଠାରେ ପ୍ରସ୍ତାବିତ ସାଲିମି, ପାପାରମେଟ୍ଲା ଓ ଚିତ୍ରକୋଣ୍ଡାଠାରେ ବ୍ଲକ ପ୍ରତିଷ୍ଠା କାମ କାର୍ଯ୍ୟକାରି ହୋଇ ପାରିଲେ ଏହି ଅନଗ୍ରସର ଅଞ୍ଚଳର ଲୋକେ ଲାଭବାନ ହୋଇ ପାରିବେ । ଏହା ବ୍ୟତୀତ ଭୌଗଳିକ କାରଣରୁ ମାଥିଲି, ଚିତ୍ରକୋଣ୍ଡା ଓ ଏମ୍.ଭି.-୭୯କୁ ଉପଖଣ୍ଡରେ ବିଭକ୍ତ କରାଯାଇ ପାରିଲେ ଏହି ପଛୁଆ ଜିଲ୍ଲାକୁ ଓଡ଼ିଶାରେ ଏକ ଅଗ୍ରଣୀ ଜିଲ୍ଲା ଭାବେ ପରିଣତ କରାଯାଇ ପାରିବ । ବହୁ ପ୍ରତିକ୍ଷିତ ପଟେରୁ ଜଳସେଚନ ଯୋଗୁଁ ୧୯୯୮ ମସିହାରୁ ପାଣି ଛଡ଼ା ଯାଇଥିବାରୁ ଏହି ଜିଲ୍ଲାର କୃଷି କାର୍ଯ୍ୟରେ ଯଥେଷ୍ଟ ଉନ୍ନତି ହୋଇପାରିଛି । ୧୯୮୩-୮୪ ମସିହାରେ ମାଲକାନଗିରି ଆଇ.ଟି.ଡି.ଏ. ପକ୍ଷରୁ ଅଟକଳ କରାଯାଇଥିବା M.J.Alli ସପ୍ତଧାରା ଜଳସେଚନ ଯୋଜନାକୁ ମଧ ତ୍ୱରାନ୍ୱିତ କରାଗଲେ ଅନେକ ଅଞ୍ଚଳରେ ଜଳସେଚନ କରାଯାଇ କୃଷିକାର୍ଯ୍ୟରେ ଉନ୍ନତି ହୋଇ ପାରିବ ବୋଲି ଆଶା କରାଯାଏ ।

ଏଠାରେ ଉଲ୍ଲେଖନୀୟ ଯେ ୧୯୫୮ ମସିହାବେଳକୁ ପାକିସ୍ଥାନ(ବାଙ୍ଗଲାଦେଶ) ଓ ପଶ୍ଚିମ ପାକିସ୍ଥାନ ଗଣ୍ଡଗୋଳ ବେଳେ ବଙ୍ଗଳାଦେଶରୁ ବହୁ ହିନ୍ଦୁ ଅତ୍ୟାଚାରିତ ହୋଇ ଭାରତ ଭିତରକୁ ପଶି ଆସିଥିଲେ । ତତକାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ନିର୍ଦ୍ଦେଶରେ ଓଡ଼ିଶାର ଉମରକୋଟ ଓ ମାଲକାନଗିରି ସମେତ ମଧ୍ୟପ୍ରଦେଶର ପାଖାନକୋର, କୋଣ୍ଡାଗାଁ ପ୍ରଭୃତି ଅଞ୍ଚଳରେ ଏମାନଙ୍କୁ ଶରଣାର୍ଥୀ ଭାବେ ଥଇଥାନ କରାଯାଇଥିଲା । ଏହି ଉଦ୍ଦେଶ୍ୟରେ ୧୯୫୮ ମସିହାରେ ଦଣ୍ଡକାରଣ୍ୟ ଯୋଜନା କାର୍ଯ୍ୟକାରୀ ହୋଇ ଏହାର ମୁଖ୍ୟ କାର୍ଯ୍ୟାଳୟ କୋରାପୁଟ ଠାରେ ସ୍ଥାପିତ ହୋଇଥିଲା । ଜଣେ ପ୍ରମୁଖ ଆଇ.ଏ.ଏସ୍ ଅଫିସର ଏହି ଯୋଜନାର ମୁଖ୍ୟ ଥିଲେ । ସେତେବେଳକୁ ତାଙ୍କୁ ସି.ଏ.

(Chief Administrator)କୁହାଯାଉଥିଲା । ମାଲକାନଗିରି ଠାରେ ଜଣେ ଆଇ.ଏ.ଏସ୍. ଅଫିସରଙ୍କୁ ଶାଖା ପ୍ରଶାସକ ବା ଜେଡ୍. ଏ (Zonal Administrator) ଭାବେ ନିଯୁକ୍ତି ଦିଆଯାଇଥିଲା । ମୋଟ ଦଶ ହଜାର ପରିବାରକୁ ମାଲକାନଗିରି ଅଞ୍ଚଳରେ ଟିଣ ଛପର ଘର ସହ ପରିବାର ପିଛା ଛଅ ଏକର ଜମି, ସୁଲଭ ମୂଲ୍ୟରେ ଖାଦ୍ୟ ସାମଗ୍ରୀ, ମାସିକ ଭତ୍ତା, ମାଗଣା ଚିକିତ୍ସା ସୁବିଧା ଓ ପ୍ରାଥମିକ ଶିକ୍ଷା ଇତ୍ୟାଦି ଯୋଗାଇ ଦିଆଯାଇଥିଲା । ପ୍ରତ୍ୟେକ ପରିବାରକୁ ଏକ ନାଗରିକ କାର୍ଡ଼ ପ୍ରଦାନ କରାଯାଇ ଭାରତୀୟ ଭାବେ ସେମାନଙ୍କୁ ଗ୍ରହଣ କରାଯାଇଥିଲା । ସର୍ବମୋଟ ୧୩୨ଟି ଏମ୍.ଭି. (Malkangiri Village)ଓ ୮୧ଟି ଏମ୍.ପି.ଭି. (Malkangiri Potteru Village) ରେ ସେମାନଙ୍କୁ ଥଇଥାନ କରାଯାଇଥିଲା । ଏହି ଯୋଜନାର ପ୍ରାରମ୍ଭରେ ସୁକୁମାର ସେନ୍ ମୁଖ୍ୟ ପ୍ରଶାସକ ଭାବରେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ଉମରକୋଟ ଠାରେ ଶ୍ରୀଯୁକ୍ତ ସେନ୍‌ଙ୍କ ନାମରେ ଏକ ଉଚ୍ଚ ବିଦ୍ୟାଳୟ ରହିଛି ।

### ସୁନ୍ଦରବନ ଭେଳିକି :

୧୯୭୭ ମସିହା ବେଳକୁ ପଶ୍ଚିମବଙ୍ଗଳାର କେତେକ ନେତାଙ୍କ ପ୍ରରୋଚନାରେ ଏଠାରେ ଏକ ଗୁଜବ ସୃଷ୍ଟି ହୋଇଥିଲା ଯେ ପଶ୍ଚିମ ବଙ୍ଗଳାର ସୁନ୍ଦରବନ ଠାରେ ସେମାନେ ଘରଦ୍ୱାର କରି ରହିଲେ ଅଧିକ ସୁଖରେ ରହିପାରିବେ ଏବଂ ସରକାରଙ୍କ ତରଫରୁ ସବୁ ସୁବିଧା ସୁଯୋଗ ପ୍ରଦାନ କରାଯିବ । ଏହି କଥାରେ ପ୍ରଭାବିତ ହୋଇ ମାତ୍ର ଅଳ୍ପ କେତେକ ପରିବାରକୁ ଛାଡ଼ି ଦେଲେ ଥଇଥାନ କରାଯାଇଥିବା ହଜାର ହଜାର ଶରଣାର୍ଥୀ ସେମାନଙ୍କର ଘରଦ୍ୱାର ଓ ଜମିବାଡ଼ି ଛାଡ଼ି ସୁନ୍ଦରବନ ଆଡ଼କୁ ମୁହାଁଇ ଥିଲେ । ଗଲାବେଳେ ଅଧିକାଂଶ ଜିନିଷପତ୍ର ରାସ୍ତାରେ ବିକ୍ରି କରିଦେଲେ । ସେଠାରେ ପହଁଞ୍ଚିଲା ପରେ ପ୍ରକୃତ ଘଟଣାକୁ ହୃଦୟଙ୍ଗମ କରି ପୁଣି ମାଲକାନଗିରି ଫେରି ଆସିଥିଲେ । ସେତିକିବେଳେ ବଙ୍ଗଳାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପାନ୍ନାଲାଲ ଦାସଗୁପ୍ତା ଶରଣାର୍ଥୀମାନଙ୍କୁ ମାଲକାନଗିରିରେ ଅବସ୍ଥାନ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ତା ସହିତ ଏଠିକାର ସ୍ଥାୟୀ ଆଦିବାସୀ ଓ ବଙ୍ଗାଳୀମାନଙ୍କ ମଧ୍ୟରେ ସୁସଂପର୍କ ପ୍ରତିଷ୍ଠା

ପାଇଁ ସେ ଚେଷ୍ଟା କରିଥିଲେ । ସେ ୧୯୬୯ ମସିହାରେ ଟାଗୋର ସୋସାଇଟି ନାମକ ସ୍ୱେଚ୍ଛା ସେବୀ ସଂସ୍ଥା ଏଠାରେ ପ୍ରତିଷ୍ଠା କରି ଜନକଲ୍ୟାଣ ପାଇଁ ଅନେକ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । କିଛି ବର୍ଷ ପୂର୍ବେ ବିଶେଷତଃ ବଙ୍ଗାଳି ଚାଷୀମାନଙ୍କ ଦ୍ୱାରା ରାଶି ଓ ଝୋଟ ବହୁଳ ପରିମାଣରେ ଉତ୍ପାଦିତ ହେଉଥିଲା । ବର୍ତ୍ତମାନ ଝୋଟ ଚାଷ କମି ଯାଇଛି । କିନ୍ତୁ, ବାଦାମ ଓ ରାଶି ଉତ୍ପାଦନରେ ଆଶାତୀତ ଉନ୍ନତି ଘଟିଛି । ତା ସହିତ ମାଛ ଚାଷରେ ମଧ୍ୟ ଉନ୍ନତି ଘଟିଛି ।

ଦଣ୍ଡକାରଣ୍ୟ ଶାସନ ଏକ ଆଦର୍ଶ ପ୍ରଶାସନ ଥିଲା । କର୍ମଚାରୀମାନେ ଦରମା ବାବଦରେ ମୋଟା ଅର୍ଥ ପାଉଥିବାରୁ ଦୁର୍ନୀତିର ପ୍ରଶ୍ନ ନଥିଲା । ଏହି ପ୍ରୋଜେକ୍ଟର ପରିସମାପ୍ତି ପରେ ସେମାନଙ୍କୁ କେନ୍ଦ୍ର ସରକାରଙ୍କ ଅଧିନରେ ଖାଲି ଥିବା ବିଭିନ୍ନ ଦପ୍ତରରେ ଅବସ୍ଥାପିତ କରାଯାଇଥିଲା ଓ ସମସ୍ତ ସମ୍ପତ୍ତିକୁ ରାଜ୍ୟ ସରକାରଙ୍କୁ ହସ୍ତାନ୍ତର କରାଯାଇଥିଲା । ଏହି ଯୋଜନା ବେଳେ କେନ୍ଦ୍ର ସରକାରଙ୍କ ପାଣ୍ଠିରୁ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଥିବାରୁ କାହା ପାଖରେ ପଇସାର ଅଭାବ ନଥିଲା । ସେତେବେଳେ ସବୁ ସ୍ତରର ଲୋକେ ବହୁ ଆନନ୍ଦରେ ଚଳୁଥିଲେ । ଅପରାଧ ସଂଖ୍ୟା କମ୍ ଥିଲା । ଭାରତର ବିଭିନ୍ନ ପ୍ରାନ୍ତରୁ ଆସି କାର୍ଯ୍ୟରତ କର୍ମଚାରୀମାନଙ୍କ ଉଦ୍ୟମରେ ଅନେକ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥିଲା । ଫଳରେ ଏଠାରେ ଅନେକ ସଂସ୍କୃତିର ମିଳନ ଘଟି ପାରିଥିଲା । ଲୋକଙ୍କୁ ବହୁ ମୂଲ୍ୟବାନ ଔଷଧ ମାଗଣାରେ ମିଳୁଥିଲା । ତା ସହିତ ଅନ୍ୟାନ୍ୟ ସୁବିଧା ସୁଯୋଗ ମଧ୍ୟ ଲୋକମାନେ ପାଉଥିଲେ । ତେଣୁ, ଏହି ଯୋଜନା କାର୍ଯ୍ୟକାରୀ ହେଉଥିବା ତିନି ଦଶନ୍ଧିକୁ (୧୯୫୮-୮୮)କୁ ମାଲକାନଗିରିର ସୁବର୍ଣ୍ଣଯୁଗ କୁହାଯାଏ । ୧୯୮୯ ମସିହା ଠାରୁ ଶ୍ରୀଲଙ୍କାରୁ ପଳାଇ ଆସିଥିବା ଅଳ୍ପ କେତେକ ତାମିଲ ଶରଣାର୍ଥୀଙ୍କୁ ମାଲକାନଗିରିରେ ମଧ୍ୟ ରଖାଯାଇଥିଲା । ❖❖❖

# ଏ ଜିଲ୍ଲାର ଅଧିବାସୀ

୧୯୭୧ ମସିହା ବେଳକୁ ଏଠାରେ ମୋଟ ୫୭୮ଟି ଗ୍ରାମ ଥିଲା । ସେତେବେଳେ ମାଲକାନଗିରିର ଲୋକସଂଖ୍ୟା ଥିଲା ୨.୬୯ ଲକ୍ଷ, ଓ ୧୯୬୧ ଜନଗଣନା ବେଳେ ଏହା ଥିଲା ୧,୪୨ ଲକ୍ଷ । ୧୯୯୧ ଜନଗଣନା ଅନୁସାରେ ଏହାର ଲୋକସଂଖ୍ୟା ଥିଲା ୪,୨୧,୯୧୭ ଓ ବର୍ତ୍ତମାନ ଏହା ସାତ ଲକ୍ଷରୁ ଉର୍ଦ୍ଧ ହେବ ବୋଲି ଅନୁମାନ କରାଯାଏ ।

ଆଦିବାସୀ ଅଧ୍ୟୁସିତ ମାଲକାନଗିରିରେ ମୁଖ୍ୟତଃ ୧୦ ପ୍ରକାର ଆଦିବାସୀ ବସବାସ କରନ୍ତି । ସେମାନେ ହେଲେ କୋୟା, ପରଜା, ଧାରୁଆ ବା ଦୁରୁଆ, ମାଟିଆ, ଭୂମିଆ, ବଣ୍ଡା, କନ୍ଧ, ଗାଦବା, ହାଲଓ୍ଵା ଓ ଡିଡ଼ାୟି ।ଏହି ଅଞ୍ଚଳରେ ବସବାସ କରୁଥିବା ଅନେକ ଆଦିବାସୀ ସମ୍ପ୍ରଦାୟ ଯଥା- ରଣା, ମାଳି ଓ ଗୌଡ଼କୁ ଆଦିବାସୀ ଭାବେ ସରକାର ଗ୍ରହଣ କରିନାହାଁନ୍ତି । ଅନୁସୂଚିତ ଜାତି ମଧ୍ୟରେ ଡମ୍ବଙ୍କର ସଖ୍ୟା ଅଧିକ ଓ ପରେ ୧୯୫୮ ମସିହାରେ ହୋଇଥିବା ବଙ୍ଗାଳୀ ଶରଣାର୍ଥୀଙ୍କ ଥଇଥାନ ପରେ ନମଶୁଦ୍ରଙ୍କ ସଂଖ୍ୟା ଅଧିକ ବୃଦ୍ଧି ପାଇଛି । ୧୯୯୧ ଜନଗଣନା ଅନୁସାରେ ଆଦିବାସୀମାନଙ୍କ ସଂଖ୍ୟା ୨,୪୬,୨୧୪ ଓ ହରିଜନଙ୍କ ସଂଖ୍ୟା ୮୪,୨୦୮ ଅଟେ । ଜିଲ୍ଲାର କେତେକ ମୁଖ୍ୟ ଆଦିବାସୀ ସଂପ୍ରଦାୟ ସଂପର୍କରେ ତଳେ ଆଲୋକପାତ କରାଯାଉଅଛି ।

**ବଣ୍ଡା :**

ବଣ୍ଡାମାନେ ଏହି ଜିଲ୍ଲାର ସର୍ବ ପୁରାତନ ଅଧିବାସୀ । ୩୦୦୦ ଫୁଟ ଉଚ୍ଚ ପାହାଡ଼ ଉପରେ ବସବାସ କରୁଥିବା ଏହି ଜାତି ବର୍ତ୍ତମାନ ଯାଏଁ ଅନୁନ୍ନତ ଅବସ୍ଥାରେ ଅଛନ୍ତି । ୧୯୭୧ ଜନଗଣନା ବେଳେ ଏମାନଙ୍କ ର ସଂଖ୍ୟା ଥିଲା ୫୨୪୫ ଏବଂ ୧୯୮୧ରେ ଏହା ୫୮୯୫ ଥିବା ବେଳେ ୧୯୯୧ ମସିହା ବେଳକୁ ୫୧୨୯କୁ କମି ଆସିଥିଲା (ପୁରୁଷ ୨୪୧୪ ଓ ମହିଳା-୨୭୧୫) । ଏମାନେ ଖଇରପୁଟ ବ୍ଲକ୍ ଅନ୍ତର୍ଗତ ବଣ୍ଡା ପାହାଡ଼ରେ ବାସ କରନ୍ତି । ଏଠାରେ ଥିବା ସୀତା କୁଣ୍ଡ ଓ ଆମାକୁଣ୍ଡ ଏକ ଦର୍ଶନୀୟ ସ୍ଥାନ । ଆମାକୁଣ୍ଡରେ ବିରାଟକାୟ ମାଛ ଦେଖିବାକୁ ମିଳେ ଯାହାକୁ ଲୋକେ କୌଣସି କ୍ଷତି ପହଞ୍ଚାନ୍ତି ନାହିଁ । ସୀତାକୁଣ୍ଡ ଓ ବଣ୍ଡାନାରୀଙ୍କ ପଛରେ ଅନେକ କିମ୍ବଦନ୍ତୀ ସଂଲଗ୍ନ ହୋଇ ରହିଛି । ଏମାନେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ଯଥା- ଓନ୍ତଲ ଓ କିଲୋ । ସେଥିରୁ ଓନ୍ତଲମାନେ ନିଜକୁ ବଡ଼ ବୋଲି ଭାବନ୍ତି । ପୋଡୁଚାଷ ପ୍ରିୟ ବଣ୍ଡାମାନେ ଜଙ୍ଗଲ ସଫାକରି ମକା, ସୁଆଁ ଇତ୍ୟାଦି ଚାଷ କରିଥାନ୍ତି । ଯିଏ ଯେତିକି ଜଙ୍ଗଲ ସଫା କରି ପାରିଲା ସେତିକି ଜମି ତାହାର ବୋଲି ସେମାନେ ଭାବନ୍ତି । ଅଧିକାଂଶ ସମୟରେ ଚାଷ କାମରେ ବଣ୍ଡା ରମଣୀମାନେ ସହଯୋଗ କରନ୍ତି ।

ବଣ୍ଡା ସମ୍ପ୍ରଦାୟରେ ବର ଅପେକ୍ଷା କନ୍ୟାର ବୟସ ସର୍ବଦା ଅଧିକ ରହେ । ସ୍ତ୍ରୀ ମାନେ ପ୍ରାୟ ଅର୍ଦ୍ଧ ଉଲଗ୍ନ ରୁହନ୍ତି । ବାର ଅନୁସାରେ ଜନ୍ମିତ ଶିଶୁର ନାମକରଣ କରାଯାଏ । କେହି ମରିଗଲେ ମୁଖାଗ୍ନି ଦେଉଥିବା ବ୍ୟକ୍ତି କୁହେ-'ହେ ଦେବତା ଯାକୁ କିଏ ପାଙ୍ଗି ଦେଇଛି ତେଣୁ ମରି ଯାଇଛି । ମୁଁ ଏବେ ଅଗ୍ନି ସଂଯୋଗ କରୁଅଛି ତେଣୁ ମୋତେ ଦୋଷ ନଲାଗୁ ।' ସେମାନେ ଜୟପୁର ରାଜାଙ୍କୁ ନିଜର ବଡ଼ଭାଇ ବୋଲି ଭାବନ୍ତି । ଏହି ଉଦ୍ଦେଶ୍ୟରେ ରାଜାଙ୍କ ସମ୍ମାନାର୍ଥେ ଦଶହରା ପର୍ବ ବେଳେ ମୁଣ୍ଡ ସଫା କରିଥାନ୍ତି ଏବଂ କୁମ୍ବଡ଼ା ନାମକ ଏକ ପର୍ବ ପାଳନ କରନ୍ତି । ମାଘ ମାସରେ ମୁଦୁଲିପଡ଼ା ଅଞ୍ଚଳରେ ଅନୁଷ୍ଠିତ ହେଉଥିବା ପାଟଖଣ୍ଡା ଯାତ୍ରା ଏମାନଙ୍କର ବଡ଼ ପର୍ବ ।

ବଣ୍ଡାମାନେ ସାମାନ୍ୟ ସାମାନ୍ୟ କଥାରେ ରାଗି ଯାଇ ହତ୍ୟା ପରି

ଜଘନ୍ୟ କାର୍ଯ୍ୟ କରିବା ପାଇଁ ମଧ କୁଣ୍ଠିତ ହୁଅନ୍ତି ନାହିଁ। ରାଗିଯିବା ସମୟରେ ବଣ୍ଡାମାନେ ପୂର୍ବର ସମସ୍ତ ସୁସମ୍ପର୍କ କଥା ଭୁଲି ଯାଆନ୍ତି । ଏମାନଙ୍କ ପାଇଁ ହତ୍ୟା ଏକ ସାଧାରଣ ଘଟଣା ହୋଇଥିବାରୁ ପ୍ରତ୍ୟେକ ପରିବାରରୁ କେହି ନା କେହି ଜେଲ ଯିବାର ନଜିର ରହିଛି । ଏହି କାରଣରୁ ଏମାନଙ୍କର ସଂଖ୍ୟା କ୍ରମେ କମି ଆସୁଥିବାରୁ ଏହି ଜାତିର ସୁରକ୍ଷା ପାଇଁ ନିକଟରେ ଲେଖକ ଭାରତର ରାଷ୍ଟ୍ରପତି ତଥା ସର୍ବୋଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧୀଶଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ଏଥିରେ କୋରାପୁଟ ଜେଲରେ ଆଜୀବନ କାରାଦଣ୍ଡାଦେଶ ଭୋଗୁଥିବା ଶତାଧିକ ବଣ୍ଡା ଯୁବକଙ୍କୁ ରାଜ କ୍ଷମା ଦେବା କିମ୍ୱା ସେମାନଙ୍କୁ ମୁକ୍ତ ଜେଲରେ ସପରିବାର ରହିବା ପାଇଁ ସୁଯୋଗ ଦେବାକୁ ଆବେଦନ କରାଯାଇଛି ।

କୋୟା :

ଏମାନେ ସବୁଠାରୁ ସଂଖ୍ୟା ବହୁଳ ଆଦିବାସୀ । ଏହି ଜିଲ୍ଲାର କାଲିମେଲା, ପଡ଼ିଆ, ମାଲକାନଗିରି ଓ କୋରୁକୋଣ୍ଡା ଆଦି ଅଞ୍ଚଳରେ ଏମାନେ ବସବାସ କରନ୍ତି । ୧୯୭୧ ବେଳକୁ ଏମାନଙ୍କର ସଂଖ୍ୟା ଥିଲା ୫୮, ୭୩୦ । ୧୯୯୧ ଜନଗଣନା ଅନୁଯାୟୀ ଏମାନଙ୍କର ସଂଖ୍ୟା ୧,୪୦,୦୦୦ । ଏବେ ଏହା ବହୁତ ବଢ଼ି ଯାଇଛି । ମାଥିଲି ଓ ମାନ୍ୟମକୋଣ୍ଡା ଅଞ୍ଚଳରେ ସର୍ବପୁରାତନ କୋୟା ଅଧିବାସୀ ଥିବାର ଦେଖାଯାଏ । ଏମାନେ ଗୋଟିଏ ଗାଁରେ ୩୦ରୁ ୩୫ ପରିବାର ଘର କରି ରୁହନ୍ତି । ସେମାନଙ୍କର ଏକ ବିଶେଷତ୍ୱ ହେଲା ଗୋଟିଏ ଜାଗାରେ କିଛି ଦିନ ରହିବା ପରେ ଅନ୍ୟ ଏକ ସ୍ଥାନକୁ ସ୍ଥାନାନ୍ତରିତ ହୋଇଯାଆନ୍ତି । ଏହାର କାରଣ ହେଲା , ସେମାନେ ଭାବନ୍ତି କାଳେ ପ୍ରାକୃତିକ ବିପର୍ଯ୍ୟୟ ଘଟିପାରେ କିମ୍ୱା ସେଠାରେ ଥିବା ଦେବତା ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ପାରନ୍ତି । ସେମାନେ ଘୁଷୁରି, ଛେଳି, ଗୋରୁ, ଗାଇ ଓ କୁକୁଡ଼ା ଇତ୍ୟାଦି ପାଳନ୍ତି । ନୂଆଣିଆ ନଡ଼ା ଛପର ଓ ବାଉଁଶ ତାଟି ଲଗା ଘରେ ଏମାନେ ବାସ କରନ୍ତି । ଚୈତ୍ର ମାସରେ କୋୟାମାନେ ବୀଜାପାଣ୍ଡୁ ପର୍ବ ପାଳନ କରନ୍ତି-ଯାହାକି ସେମାନଙ୍କର ମୁଖ୍ୟ ପର୍ବ ।

ଧୂଆଁପତ୍ର, ମାଣ୍ଡିଆ, ମକା ଓ ଭଟାଧାନ ଚାଷ କରିବାକୁ ଏମାନେ ଭଲ ପାଆନ୍ତି । ମହୁଲ ଓ ସଲପ ସେମାନଙ୍କର ଉତ୍କୃଷ୍ଟ ପାନୀୟ । ଏହାକୁ

ଛାଡ଼ି ସେମାନେ କୌଣସି କାମ କରି ପାରନ୍ତି ନାହିଁ । ରୋଗ ହେଲେ ଝାଡ଼ ଫୁଙ୍କ ଓ ଚେରମୂଳି ବ୍ୟବହାର କରନ୍ତି । ଗୋରୁଗାଈଙ୍କର କ୍ଷୀର କମ୍ ବ୍ୟବହାର କରନ୍ତି । ଗ୍ରାମର ମୁଖ୍ୟଙ୍କୁ ପେଦା କୁହାଯାଏ ଓ ଏହା ବଂଶାନୁକ୍ରମିକ । କେତେକ ଗ୍ରାମକୁ ନେଇ ଏକ ମୁଠା ବା ପଞ୍ଚାୟତ ଗଠିତ ହୁଏ । ପୂର୍ବେ ଏମାନଙ୍କୁ ମୁଠାଦାର କୁହାଯାଉଥିଲା । ଗାଁରେ ଜଣେ କଟୁଆଳ ରହନ୍ତି ଯିଏ କି ପେଦାଙ୍କୁ ସାହାଯ୍ୟ କରିଥାନ୍ତି । ସେମାନଙ୍କର ପ୍ରାୟ ସବୁକଥା ଗାଁ କମିଟିରେ ମିମାଂସା କରାଯାଏ । ଏମାନେ ଏକତା ପ୍ରିୟ ଓ ଦେଶ ଭକ୍ତ । ତାମା ଦୋରା ଭଳି ବିପ୍ଳବୀଙ୍କର ନେତୃତ୍ୱରେ ୧୮୮୦ ମସିହାରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଏକ ବିପ୍ଳବ ସଂଗଠିତ ହୋଇଥିଲା, ଯାହାକି ଭାରତ ଇତିହାସରେ କୋୟା ବିପ୍ଳବ ନାମରେ ପ୍ରସିଦ୍ଧ ।

**ଭୂମିଆ :**

ମାଲକାନଗିରି ଜିଲ୍ଲାରେ ବହୁ ପୂର୍ବରୁ ବସବାସ କରୁଥିବା ଏହି ଅଧିବାସୀ ସାଧାରଣତଃ ଓଡ଼ିଶାର ଅବିଭକ୍ତ କୋରାପୁଟ, ଫୁଲବାଣୀ, ଗଂଜାମ ଓ ସୁନ୍ଦରଗଡ଼ ଜିଲ୍ଲାରେ ଦେଖାଯାନ୍ତି । କୋୟାମାନଙ୍କୁ ଛାଡ଼ି ଦେଲେ ଏମାନଙ୍କ ସ୍ଥାନ ଏଠାରେ ଦ୍ୱିତୀୟରେ ରହିବ । ଗାଁର ମୁଖିଆଙ୍କୁ ନାୟକ କୁହାଯାଏ । ପ୍ରାୟ ୨୦ ଖଣ୍ଡ ଗ୍ରାମକୁ ନେଇ ଜଣେ ଭଟନାୟକ ରହନ୍ତି । ସ୍ୱାଧୀନତା ସଂଗ୍ରାମ ବେଳେ ଏମାନଙ୍କର ଯୋଗଦାନ ସର୍ବଦା ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ହୋଇ ରହିବ । ଏ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଭିତରୁ ଅଧିକାଂଶ ଭୂମିଆ ଅଟନ୍ତି । ଏମାନଙ୍କ ସାମାଜିକ ଜୀବନରେ ବର କନ୍ୟାକୁ ଉଦୁଲିଆ ନେବାର ବ୍ୟବସ୍ଥା ରହିଛି । ଏମାନେ ପୋଡୁଚାଷ କରନ୍ତି ନାହିଁ । ବାଲିଯାତ୍ରାକୁ ଏକ ବିଶିଷ୍ଟ ପର୍ବ ଭାବେ ଏମାନେ ପାଳନ କରନ୍ତି । ସହିଦ୍ ଲକ୍ଷ୍ମଣ ନାୟକ ଏହି ଜାତିରେ ଜନ୍ମ ନେଇ ଏ ମାଟିର ଟେକ ରଖିଛନ୍ତି ।

**ପରଜା :**

ଏମାନେ ମାଲକାନଗିରି ବ୍ୟତୀତ ଓଡ଼ିଶାର ଅବିଭକ୍ତ କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼,. ଢେଙ୍କାନାଳ, ଫୁଲବାଣୀ, ପୁରୀ, କଟକ ଓ ମୟୂରଭଞ୍ଜରେ ବସବାସ କରନ୍ତି । ୧୯୭୧ ମସିହାରେ ଏହି ଅଞ୍ଚଳରେ ଏମାନଙ୍କର ସଂଖ୍ୟା ଥିଲା ୧୧,୩୬୧ । ଏହି ଜିଲ୍ଲାର ଆଦିବାସୀମାନଙ୍କ

ମଧ୍ୟରେ ଏମାନେ ଦ୍ୱିତୀୟ ସ୍ଥାନରେ ରହିବେ । ଝଡ଼ିଆ, ବାରେଙ୍ଗ, ପେଙ୍ଗା ଓ କୋଣ୍ଡା ଇତ୍ୟାଦିରେ ଏମାନେ ବିଭକ୍ତ । ସର୍ବଦା ବାଘ, କଇଁଛ, ଛେଳି, କୁକୁର ଓ ଝିଟିପିଟି ଗୋତ୍ରର ଲୋକ ବୋଲି ଏମାନେ ନିଜର ପରିଚୟ ଦିଅନ୍ତି । ସେମାନେ ଏହି ଜୀବମାନଙ୍କୁ ହତ୍ୟା କରନ୍ତି ନାହିଁ କିମ୍ୱା ଏହି ଗୋତ୍ରରେ ବିବାହ କରନ୍ତି ନାହିଁ ।

**କନ୍ଧ :**

ଏଠାରେ ଏମାନଙ୍କୁ ଦେଶିଆ କନ୍ଧ ବୋଲି କୁହାଯାଏ । କୋରାପୁଟ ପାହାଡ଼ରେ ଥିବା କନ୍ଧମାନଙ୍କୁ ଡଙ୍ଗରିଆ କନ୍ଧ କୁହାଯାଉଥିବା ବେଳେ ଫୁଲବାଣୀ ଓ ଚନ୍ଦ୍ରପୁରରେ ଅବସ୍ଥାନ କରୁଥିବା କନ୍ଧମାନଙ୍କୁ କୁଟିଆ କନ୍ଧ କୁହାଯାଏ । ଏହି ଦେଶିଆ କନ୍ଧମାନେ ମିଳିମିଶି ରହିବାକୁ ଭଲ ପାଆନ୍ତି । ପରିବାର ବଢ଼ିଲେ ବି ସେମାନେ ଏକତ୍ର ରହନ୍ତି । ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ କଥାରେ ପରିବାର ଚଳେ । ଗାଁର ମୁଖ୍ୟ ବଂଶାନୁକ୍ରମିକ ପଦବୀ ସମ୍ଭାଳନ୍ତି । ପୋଡୁଚାଷ ପ୍ରିୟ କନ୍ଧମାନଙ୍କର ମୁଖ୍ୟ ଫସଲ ମକା ଅଟେ । ଏହା ଅକ୍ଟୋବର ଓ ନଭେମ୍ବର ଆଡ଼କୁ ଅମଳ ହୁଏ । ଏମାନେ କିଛି ତନ୍ତ୍ର ବିଦ୍ୟା ଜାଣନ୍ତି ଭାବି ବଣ୍ଡାମାନେ ଏମାନଙ୍କୁ ଭୟ କରନ୍ତି ।

**ଗାଦବା :**

ମାଲକାନଗିରି ସମେତ କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼, ଗଂଜାମ, ସମ୍ବଲପୁର ଓ ବୌଦ ଫୁଲବାଣୀ ଅଞ୍ଚଳରେ ଏମାନେ ବସବାସ କରନ୍ତି । ମାମୁଁଙ୍କ ପୁଅ ବା ଝିଅ ବା ମାଉସୀର ପୁଅ ବା ଝିଅକୁ ବିବାହ କରିବା ପାଇଁ ଏମାନେ ପସନ୍ଦ କରନ୍ତି । ଏମାନେ ଉଭୟ ଚାଷ ଓ ପଶୁପାଳନ କରି ଜୀବିକା ନିର୍ବାହ କରନ୍ତି ।

**ମାଟିଆ :**

ମାଲକାନଗିରି ସମେତ ଢେଙ୍କାନାଳ, ବଲାଙ୍ଗିର ଓ କଳାହାଣ୍ଡି ଅଞ୍ଚଳରେ ଏମାନେ ବସବାସ କରନ୍ତି । ସାଧାରଣ ବସ୍ତ୍ର ପରିହିତ ମାଟିଆ ମାନେ ସରଳ ଜୀବନଯାପନ କରନ୍ତି । ଏମାନେ ମକା, ସୁଆଁ, ଧୂଆଁପତ୍ର ଓ ପରିବା ଇତ୍ୟାଦି ଚାଷ କରିଥାନ୍ତି । ଏଠାରେ ଏମାନଙ୍କୁ ଅନ୍ୟ ସଂପ୍ରଦାୟର

ଲୋକେ ସାନ ବୋଲି ଭାବନ୍ତି ।

**ଧାରୁଆ, ହାଲଓ୍ୱା ଓ ଡିଡ଼ାୟି :**

ଡିଡ଼ାୟିମାନେ ମାଲକାନଗିରି ଜିଲ୍ଲାର କୁଡ଼ୁମୁଲୁଗୁମା ଅଞ୍ଚଳରେ ବସବାସ କରନ୍ତି । ଏମାନଙ୍କର ଉନ୍ନତି ପାଇଁ ସରକାରଙ୍କ ତରଫରୁ ଡିଡ଼ାୟି ଉନ୍ନୟନ ସଂସ୍ଥା କାର୍ଯ୍ୟ କରୁଅଛି । ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ଏମାନେ ଦେଖିବାକୁ ମିଳନ୍ତି ନାହିଁ । ଧାରୁଆ ଓ ହାଲଓ୍ୱା ଜାତିର ଲୋକେ କୋରୁକୋଣ୍ଡା ବ୍ଲକ ଅନ୍ତର୍ଗତ ବିଭିନ୍ନ ଗ୍ରାମରେ ବସବାସ କରନ୍ତି । ସୀମାନ୍ତରେ ଥିବା ମଧ୍ୟପ୍ରଦେଶର ବସ୍ତର ଅଞ୍ଚଳରେ ମଧ୍ୟ ଏମାନେ ଦେଖିବାକୁ ମିଳନ୍ତି ।

ଧାରୁଆମାନଙ୍କୁ ଏଠାରେ ଦୁରୁଆ ବୋଲି ମଧ୍ୟ ସଂବୋଧନ କରାଯାଏ । ଏହି ସବୁ ଜାତିମାନଙ୍କର ନିଜସ୍ୱ ଭାଷା, ସଂସ୍କୃତି ଓ ପରମ୍ପରା ରହିଛି । ଏମାନେ ଅତ୍ୟନ୍ତ ଶାନ୍ତିପ୍ରିୟ ଓ ଶୃଙ୍ଖଳିତ ଜୀବନଯାପନ କରନ୍ତି ।

୧୯୯୫ ମସିହା ଠାରୁ ସ୍ଥାନୀୟ ଜନସାଧାରଣଙ୍କ ଉଦ୍ୟମରେ ଏଠାରେ ଏକ ଦଣ୍ଡକାରଣ୍ୟ ସଂଗ୍ରାହଳୟ ପ୍ରତିଷ୍ଠିତ ହୋଇ କାର୍ଯ୍ୟ ଆରମ୍ଭ କରା ଯାଇଛି । ଏହି ସଂଗ୍ରାହଳୟରେ ଉପରୋକ୍ତ ସମସ୍ତ ଜାତିଙ୍କର ସଂସ୍କୃତିକୁ ଆଗାମୀ ଦିନ ପାଇଁ ସଂରକ୍ଷିତ କରିବା ସହ ଏମାନଙ୍କ ଉନ୍ନତି କଳ୍ପେ ଅଧିକ ଗବେଷଣା କରିବାକୁ ସ୍ଥିର କରାଯାଇଛି । ମାଲକାନଗିରି ଜିଲ୍ଲାପାଳ ଏହାର ଅଧ୍ୟକ୍ଷ , ଏସ୍. ପି. ଉପାଧ୍ୟକ୍ଷ ତଥା ଲେଖକ ଏହି ଅନୁଷ୍ଠାନର ସଂପାଦକ ଅଛନ୍ତି । ❖❖❖

# ସଂସ୍କୃତି ଓ ସାହିତ୍ୟ

ଦୀର୍ଘଦିନ ଧରି ଏଠାରେ ଆଦିବାସୀମାନେ ନିଜ ନିଜ ସଂସ୍କୃତି ଓ ପରମ୍ପରା ଅନୁସାରେ ନାଚଗୀତ ତଥା ମନୋରଞ୍ଜନାଦି କାର୍ଯ୍ୟକ୍ରମ କରି ଆସୁଥିଲେ । ସନ୍ଧ୍ୟା ହେଲେ ନାଚ ଗୀତ ସେମାନଙ୍କ ପାଇଁ ଏକ ମୁଖ୍ୟ ଆକର୍ଷଣ ଥିଲା । ବିଭିନ୍ନ ଗ୍ରାମର ଲୋକେ ନାଚ ଶିକ୍ଷା କରୁଥିଲେ । ପରେ ଏହା ଅନ୍ୟ ଗ୍ରାମରେ ପରିବେଷଣ କରାଯାଉଥିଲା । ଆଦିବାସୀମାନେ ଘରେ ନିଜସ୍ୱ ଭାଷାରେ କଥା ହେଉଥିଲେ ମଧ୍ୟ ହାଟବଜାର ବା ବାହାରେ ଦେଶିଆ ଭାଷାରେ କଥାବାର୍ତ୍ତା କରୁଥିଲେ ଓ ବୁଝୁଥିଲେ । ଅନେକ ନାଚଗୁରୁଙ୍କ ତତ୍ୱାବଧାନରେ ମଧ୍ୟ ଦେଶିଆ ନାଚ ଶିକ୍ଷା କରାଯାଉଥିଲା । ନାଚଗୁରୁମାନଙ୍କୁ ସମାଜରେ ଉଚ୍ଚସ୍ଥାନ ଦିଆଯାଉଥିଲା । ସେମାନେ ମାଗଣାରେ ରହିବା, ଖାଇବା ଓ ପାରିଶ୍ରମିକ ବାବଦରେ ଧାନ ଓ ଚାଉଳ ପାଉଥିଲେ ।

୧୯୫୮ ମସିହା ପର ଠାରୁ ଦଣ୍ଡକାରଣ୍ୟ ପରିଯୋଜନାରେ କାମ କରୁଥିବା କର୍ମଚାରୀମାନଙ୍କ ତତ୍ତ୍ୱାବଧାନରେ ଅନେକ ମନୋରଞ୍ଜନ ତଥା ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥିଲା । ଦଣ୍ଡକାରଣ୍ୟ ଲୋକ ସଂପର୍କ ବିଭାଗ ତରଫରୁ ଗାଁ ଗାଁ ବୁଲି ବିଭିନ୍ନ ଚଳଚ୍ଚିତ୍ରମାନ ପ୍ରଦର୍ଶିତ କରାଯାଉଥିଲା । ମାଲକାନଗିରିର କେତେକ ସ୍ଥାନୀୟ ବ୍ୟକ୍ତି, ବୁଦ୍ଧିଜୀବି, ଶିକ୍ଷକ ତଥା ସରକାରୀ କର୍ମଚାରୀଙ୍କ ଉଦ୍ୟମରେ ଅନେକ ନାଟକ ନିୟମିତ ପରିବେଷଣ କରାଯାଉଥିଲା । ଏଥିପାଇଁ ସଦର ମହକୁମାରେ ଥିବା ଚିତ୍ତବିନୋଦନ କେନ୍ଦ୍ର କଳାର ବିକାଶ ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ମାଲକାନଗିରି ତଳ ସାହି ଯୁବକ ସଂଘ ଦ୍ୱାରା ପରିଚାଳିତ ଏହି ଜିଲ୍ଲାର ସର୍ବବୃହତ ଓ ପୁରାତନ ପାଠାଗାର ଖ୍ୟାତି ଲାଭ କରିଥିଲା । ୧୯୭୬ ମସିହାରେ ସ୍ଥାନୀୟ କଳାମଣ୍ଡପକୁ ଭଡ଼ା ସୂତ୍ରରେ ସିନେମା ହଲ୍ ପାଇଁ

ଚିତ୍ରବିନୋଦନ କେନ୍ଦ୍ର ଅନୁମତି ପ୍ରଦାନ କରିଛି । ଏହି ସମୟରେ ରାମଦାସ ଗଉଡ଼ ନାମକ ଜଣେ ଅବସରପ୍ରାପ୍ତ ସ୍ୱାସ୍ଥ୍ୟ କର୍ମଚାରୀଙ୍କ ଦ୍ୱାରା ଅନେକ ଦିନ ଧରି ଗଞ୍ଜାମ ସଖୀ ନାଚର ପ୍ରଚାର ଓ ପ୍ରସାର ହୋଇଥିଲା ।

ସର୍ବ ଶ୍ରୀ ଡମରୁଧର ଦାସ, ବି.ଏସ୍.ଏନ୍. ପଟ୍ଟନାୟକ, କୈଳାସ ପଟ୍ଟନାୟକ, ନରସିଂହ ମିଶ୍ର, ପ୍ରଫୁଲ୍ଲ କୁମାର ପାଣିଗ୍ରାହୀ, ରାମନାରାୟଣ ରଥ, ଜି. ବାଲାରାଜୁ, ଗଂଗାଧର ମାଢ଼ୀ, ଓ ପ୍ରହ୍ଲାଦ ଦୋରାଙ୍କ ଉଦ୍ୟମରେ ଏଠାରେ ଅନେକ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଇଥିଲା । ୧୯୭୮-୭୯ ମସିହାରେ ସୁଧାକର ଦାଶ, ସାମ୍ବାଦିକ ଗଣ ଜାଗରଣ ପ୍ରଚାଣ୍ଡ ସମିତି ଚିତ୍ରକୋଣ୍ଡା ଠାରେ ସ୍ଥାପନ କରି 'ଗଣ ଜାଗରଣ' ନାମରେ ଏକ ପତ୍ରିକା ପ୍ରକାଶ କରିଥିଲେ । ୧୯୮୧-୮୨ ମସିହାରେ ଅର୍ଜୁନ ନାଲ୍ଲୀ 'ଶିଶୁପ୍ରଭା' ନାମକ ଏକ ଶିଶୁ ଓ କିଶୋର ପତ୍ରିକା ପ୍ରକାଶ କରିଥିଲେ । ବାଲିମେଳାଠାରେ ରହି ସେ ଅନେକ ପୁସ୍ତକ ରଚନା କରିଛନ୍ତି । ଏହି ଜିଲ୍ଲାର ସାହିତ୍ୟିକ ଭାବରେ ସେ ପ୍ରଥମ ସ୍ଥାନରେ ରହିବେ । ତାଙ୍କର ଶିକ୍ଷା ସଂଗ୍ରହ ବହି ଅନେକ ଦିନ ଧରି ଓଡ଼ିଶାରେ ଚହଳ ପକାଇ ପାରିଥିଲା ।

ଚିତ୍ରକୋଣ୍ଡା ଓ ବାଲିମେଳା ଅଞ୍ଚଳରେ କେତେକ ଉତ୍ସାହି କର୍ମଚାରୀଙ୍କ ଦ୍ୱାରା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଇଥିଲା । ୧୯୬୭ ମସିହାରେ ଚିତ୍ରକୋଣ୍ଡାଠାରେ ଏକ ବଡ଼ ସିନେମା ହଲ୍ ଥିଲା । ଯାହାକି ପରେ ବନ୍ଦ ହୋଇଗଲା । ଏହି ଅଞ୍ଚଳରେ ବିଭିନ୍ନ ଶିକ୍ଷା ଅନୁଷ୍ଠାନ ତରଫରୁ ଓଡ଼ିଆ ଓ ବଙ୍ଗଳା ଭାଷାରେ ଅନେକ ନାଟକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇ ଏହି ଜିଲ୍ଲାର ସଂସ୍କୃତି ଓ ସାହିତ୍ୟକୁ ଆଗେଇ ନେଇ ପାରିଛି ।

୧୯୮୭ ମସିହାରେ ଏଠାକାର କେତେଜଣ ଅଧ୍ୟାପକ, ଶିକ୍ଷକ, କର୍ମଚାରୀ ତଥା ସାହିତ୍ୟିକଙ୍କ ଉଦ୍ୟମରେ ସ୍ଥାନୀୟ ଉଚ୍ଚ ବାଳକ ବିଦ୍ୟାଳୟ ଓ ପରେ ଶିବାନନ୍ଦ ଏଙ୍ଗ୍ଲୋ ବୈଦିକ ବିଦ୍ୟାଳୟ ପରିସରରେ ନିୟମିତ ସାହିତ୍ୟ ଆସର ଅନୁଷ୍ଠିତ ହୋଇଆସୁଛି । ୧୯୮୮ ମସିହା ଠାରୁ ମନୋଜ ସାହୁଙ୍କ ସମ୍ପାଦନାରେ ମାଲ୍ୟବନ୍ତ ନାମରେ ସାହିତ୍ୟ ପତ୍ରିକାଟିଏ ପ୍ରକାଶ ପାଇ



(୧୯୮୮ ମସିହାରେ ମାଲ୍ୟବନ୍ତର ଏକ ସ୍ୱତନ୍ତ୍ର ସଂଖ୍ୟାକୁ ଓଡ଼ିଶା ହାଇକୋର୍ଟର ତତ୍କାଳୀନ ମୁଖ୍ୟ ବିଚାରପତି ମାନ୍ୟବର ଶ୍ରୀଯୁକ୍ତ ରାଧାଚରଣ ପଟ୍ଟନାୟକ ଉନ୍ମୋଚନ କରୁଛନ୍ତି ।)

ଲୋକପ୍ରିୟ ହୋଇପାରିଥିଲା । ୧୯୯୪ ମସିହା ପର ଠାରୁ ମାଲ୍ୟବନ୍ତ ସାହିତ୍ୟ ସଂସଦ ଓ କଳିଙ୍ଗ ସାହିତ୍ୟ ପରିଷଦ ଗଠିତ ହୋଇ ଏ ଜିଲ୍ଲାରେ ସାହିତ୍ୟ ଓ ସଂସ୍କୃତିକୁ ଆଗେଇ ନେଇଛନ୍ତି । ଏଠାରେ ସ୍ମରଣ ଯୋଗ୍ୟ ଯେ ୧୯୯୨ ମସିହା ଅକ୍ଟୋବର ମାସ ୧୨ ତାରିଖରେ ମାଲ୍ୟବନ୍ତ ସାହିତ୍ୟ ସଂସଦ ତରଫରୁ ନୂତନ ଜିଲ୍ଲାକୁ ସ୍ୱାଗତ କରି ବଡ଼ ଧରଣର ମନୋରଞ୍ଜନ କାର୍ଯ୍ୟକ୍ରମ କରାଯାଇଥିଲା । ପ୍ରକାଶ ଚନ୍ଦ୍ର ପଟ୍ଟନାୟକଙ୍କ ଦ୍ୱାରା କିଛି ଦିନ ଅମୃତ ବିଚାର ନାମରେ ଏକ ସାହିତ୍ୟ ପତ୍ରିକା ପ୍ରକାଶ ପାଇ ବନ୍ଦ ହୋଇ ଯାଇଛି । ସାକ୍ଷରତା କାର୍ଯ୍ୟକ୍ରମ ଅନ୍ତର୍ଗତ ଅଭିଯାନ ପତ୍ରିକା କିଛି ଦିନ ଚାଲି ମଧ୍ୟ ବନ୍ଦ ହୋଇ ଯାଇଛି । ୧୯୯୬ ମସିହା ଫେବୃୟାରୀ ମାସରେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଜିଲ୍ଲା ସାଂସ୍କୃତିକ ପରିଷଦ ଦ୍ୱାରା ଏକ ରାଜ୍ୟ ସ୍ତରୀୟ ସାହିତ୍ୟ ଉତ୍ସବ ଅନୁଷ୍ଠିତ ହୋଇଥିଲା ।

ଏଠାରେ ରହି ବା ପ୍ରେରଣା ପାଇ ଯେଉଁ ମହାନ ସାହିତ୍ୟିକମାନେ କେତେକ କାଳଜୟୀ ସାହିତ୍ୟ ସୃଷ୍ଟି କରିଛନ୍ତି ସେଗୁଡ଼ିକ ହେଲା-

| | | | |
|---|---|---|---|
| ୧।। | ଫେରି ଆସ | - | ନରସିଂହ ମିଶ୍ର |
| ୨।। | ସହୀଦ ଲକ୍ଷ୍ମଣ ନାୟକ | - | ରାମନାଥ ପଣ୍ଡା |
| ୩।। | ପରଜା | - | ଗୋପୀନାଥ ମହାନ୍ତି |
| ୪।। | ତମସା ତୀରେ | - | କାହ୍ନୁଚରଣ ମହାନ୍ତି |
| ୫।। | ଆଦିଭୂମି | - | ପ୍ରତିଭା ରାୟ |
| ୬।। | ମାଟିର ଦୀପାଳି | - | ଅର୍ଜୁନ ନାଲା |
| ୭।। | ଦଣ୍ଡକାରଣ୍ୟ ଡାକେ | - | ପାନ୍ନାଲାଲ୍ ଦାସଗୁପ୍ତା |

ଏଠାରେ ଦଶହରା ଓ କାଳୀପୂଜା ବଡ଼ ଧୁମଧାମରେ ପାଳିତ ହୋଇଥାଏ । ମୂର୍ତ୍ତି ତିଆରି କରିବାରେ ବଙ୍ଗାଳି କାରିଗରମାନେ ସେମାନଙ୍କର ଦକ୍ଷତା ଅଧିକପ୍ରଦର୍ଶିତ କରିଥାନ୍ତି । ପୂଜା ସମୟରେ ବଙ୍ଗଳା ଯାତ୍ରା ଓ ନାଟକ ଦେଖିବାକୁ ମିଳେ । ଏହା ଅତ୍ୟନ୍ତ ମନମୁଗ୍ଧକର । ପ୍ରତି ଦୁଇ ବର୍ଷରେ ଥରେ ଏଠାରେ ବଡ଼ଯାତ୍ରା ପାଳିତ ହୋଇଥାଏ । ଅନେକ ସ୍ଥାନରୁ ମୀନାବଜାର, ଚିଡ଼ିଆଖାନା, ସର୍କସ, କୁଣ୍ଢେଇନାଚ ଓ ଅପେରା ଆଦି ଆସି ପ୍ରଦର୍ଶିତ ହୁଏ । ଲୋକମାନେ ଏ ସବୁ ବେଶ୍ ଉପଭୋଗ କରିବା ସହ ଦେଶର ବିଭିନ୍ନ ଅଞ୍ଚଳର ସଂସ୍କୃତି ବିଷୟରେ ଅନେକ କଥା ଜାଣି ପାରିଚି ।

ଦଣ୍ଡକାରଣ୍ୟ ସମାଚାରର ସାମ୍ବାଦିକ କୃଷ୍ଣମୋହନ ଦାସ, ପ୍ରଜାତନ୍ତ୍ରର ସାମ୍ବାଦିକ ରତ୍ନାକର ଦାଶଙ୍କର ସାହିତ୍ୟ ଓ ସାମ୍ବାଦିକତାରେ ଯଥେଷ୍ଟ ଅବଦାନ ରହିଛି । ସେମାନେ ମାଲକାନଗିରିର ବିଭିନ୍ନ ଖବରକୁ ଲୋକଲୋଚନକୁ ଆଣି ଏହାକୁ ଅଧିକ ପରିଚିତ କରାଇ ପାରିଛନ୍ତି । ସମାଜର ସାମ୍ବାଦିକ ସୁଧାକର ଦାଶଙ୍କ ସାମ୍ବାଦିକତା ଓ ସାହିତ୍ୟ ସେବା କଥା ପୂର୍ବରୁ ଉଲ୍ଲେଖ କରା ଯାଇଛି । ପଦ୍ମନାଭ ମାଡ଼କାମି ଶିକ୍ଷକଙ୍କ ଦ୍ୱାରା କୋୟା ଭାଷା ଓ ସଂସ୍କୃତି ବିଷୟରେ ଏକ ପୁସ୍ତକ ପ୍ରକାଶିତ ହୋଇଛି । ଏଠାକାର ଆଦିବାସୀ ସମାଜ ଓ ସଂସ୍କୃତି ଉପରେ ଅନେକ ଗବେଷକ ସେମାନଙ୍କର ସନ୍ଦର୍ଭ ପ୍ରସ୍ତୁତ

କରିଛନ୍ତି । 'ଆମ ଓଡ଼ିଶା' ତରଫରୁ ଓଡ଼ିଆ ଭାଷାର ଶୁଦ୍ଧ ଲିଖନ ଓ ପଠନ କାର୍ଯ୍ୟକ୍ରମ ଏଠାକାର ଛାତ୍ରଛାତ୍ରୀମାନଙ୍କ ପାଇଁ ଉପାଦେୟ ହୋଇ ପାରିଛି ।

ମାଲକାନଗିରି ବ୍ୟତୀତ କୋରୁକୋଣ୍ଡା ସାହିତ୍ୟ ସଂସଦ, ବାଲିମେଳା ସାହିତ୍ୟ ସଂସଦ ଓ ଚିତ୍ରକୋଣ୍ଡା ଠାରେ ଥିବା ଗଣଜାଗରଣ ପ୍ରଚାର ସମିତି ତରଫରୁ ନିୟମିତ ସାରସ୍ୱତ ଉତ୍ସବ ମାଧ୍ୟମରେ କବିତା ପାଠ, ଗଳ୍ପ, ରମ୍ୟ ରଚନା, ଓ ପ୍ରବନ୍ଧାଦି ଉପସ୍ଥାପନ କରାଯାଇ ଏହି ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧି କରାଯାଇ ପାରିଛି । ମାଲ୍ୟବନ୍ତ ସାହିତ୍ୟ ସଂସଦ ତରଫରୁ ପ୍ରକାଶିତ ଓ କୃତି ଶିକ୍ଷକ ମୁକ୍ତିକାନ୍ତ ପାଣିଗ୍ରାହୀଙ୍କ ଦ୍ୱାରା ଲିଖିତ ପୁସ୍ତକ 'ଶିକ୍ଷାସୌଧର ଶିଳ୍ପୀ' ବେଶ୍ ଜନାଦୃତ ହୋଇପାରିଛି । ଏଠାକାର ସ୍ୱଲେଖକ ପ୍ରଭାକର ପଣ୍ଡାଙ୍କ ଦ୍ୱାରା ଏକ ନାଟକ ବହି ପ୍ରକାଶିତ ହୋଇଛି । ବାଲିମେଳା ଠାରେ ଥିବା ଗୋପବନ୍ଧୁ ସାଂସ୍କୃତିକ କେନ୍ଦ୍ର ଓ ତମସା କଳା କେନ୍ଦ୍ର ମାଧ୍ୟମରେ ସାଂସ୍କୃତିକ କାର୍ଯ୍ୟକ୍ରମ ନିୟମିତ କରାଯାଇ ପାରୁଛି । ଆଦିବାସୀ ଅଧ୍ୟୁଷିତ ମାଥିଲି ଠାରେ ବୈଦ୍ୟନାଥ ମିଶ୍ର ଓ ହଳଧର ପୂଜାରୀଙ୍କ ଚେଷ୍ଟାରେ ସେଠାରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇପାରିଛି ।

ଆଧୁନିକ ବାଦ୍ୟ ଯନ୍ତ୍ର ସହ ଆଦିବାସୀ ସଂଗୀତ ଗାନ କରିଥିବା ଜୟପୁରସ୍ଥ ବିଶିଷ୍ଟ କଳାକାର ସତ୍ୟ ଅଧିକାରୀଙ୍କ ଲୋକସଂଗୀତ ଏଠାକାର ଜନସାଧାରଣଙ୍କୁ ବହୁ ଆନନ୍ଦ ଦେଇ ପାରିଛି । ଆକାଶବାଣୀ ଜୟପୁର କେନ୍ଦ୍ର ଦ୍ୱାରା ପ୍ରଚାରିତ ବିଭିନ୍ନ କାର୍ଯ୍ୟକ୍ରମ ଏଠାରେ ପ୍ରଶଂସନୀୟ ତଥା ଉପାଦେୟ ହୋଇପାରିଛି । ପ୍ରତିଷ୍ଠିତ ମାଲକାନଗିରି ଦୂରଦର୍ଶନ ପୁନଃ ପ୍ରସାରଣ କେନ୍ଦ୍ର ସ୍ୱଳ୍ପ କ୍ଷମତା ସମ୍ପନ୍ନ ହୋଇଥିବା ଦୃଷ୍ଟିରୁ ଗ୍ରାମାଞ୍ଚଳର ଲୋକେ ଉପକୃତ ହୋଇପାରୁ ନାହାନ୍ତି ।

ସୁ-ପ୍ରଶାସକ ଧନଞ୍ଜୟ ସ୍ୱାଇଁଙ୍କ ଉଦ୍ୟମରେ ୧୯୯୯ ମସିହାରେ ଏଠାରେ ଏକ ବଡ଼ଧରଣର ପୁସ୍ତକ ମେଳା ଅନୁଷ୍ଠିତ ହୋଇଯାଇଛି । ଏହା ଦ୍ୱାରା ଜନସାଧାରଣଙ୍କ ପଠନ ପିପାସା ବୃଦ୍ଧି ତଥା ଓଡ଼ିଆ ଭାଷା ସାହିତ୍ୟର

ସମୃଦ୍ଧି ଓ ପ୍ରସାର ହୋଇ ପାରିବ । ଆଗାମୀ ବର୍ଷମାନଙ୍କରେ ଏହା ଅଧିକ ସଫଳ ହେବ ବୋଲି ଆଶା କରାଯାଏ ।

ଏମ୍. ଭି.-୨ ଗ୍ରାମସ୍ଥ ତଥା ସ୍ଥାନୀୟ ଶିବାନନ୍ଦ ଏଙ୍ଗ୍ଲୋବୈଦିକ ବିଦ୍ୟାଳୟର ଛାତ୍ର ରାଜେଶ ହାଂସଦା ଧନୁର୍ବିଦ୍ୟାରେ ନିକଟରେ ହୋଇଥିବା ବ୍ୟାଙ୍କକ୍ ଏସିଆଡ୍ କ୍ରୀଡ଼ାରେ ଦେଶ ତରଫରୁ ଭାଗ ନେଇଥିଲେ । ସେହିପରି ପଦ୍ମଗିରି ଗ୍ରାମର ଆଦିବାସୀ ଯୁବକ ଗଂଗାଧର ମାଢ଼ି ଜାତୀୟ ସ୍ତରରେ ଧନୁର୍ବିଦ୍ୟାରେ ସୁନାମ ଅର୍ଜନ କରିପାରିଛନ୍ତି । ବିଭିନ୍ନ କ୍ଲବ ତରଫରୁ ମଧ୍ୟ ଅନେକ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯିବା ସହ ଅବିଭକ୍ତ କୋରାପୁଟ ଜିଲ୍ଲା ସ୍ତରୀୟ ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତା କରାଯାଇପାରୁଛି । ତେବେ ଏଠାରେ କ୍ରୀଡ଼ା ପାଇଁ ବିଶେଷ ପ୍ରୋତ୍ସାହନର ଆବଶ୍ୟକତା ରହିଛି । ❖❖❖

# ମାଲକାନଗିରିର ପରବର୍ତ୍ତୀ ରାଜନୈତିକ ପରିସ୍ଥିତି

୧୯୪୬ ମସିହାରେ ଜୟପୁର ର ରାଧାମୋହନ ସାହୁ ଏଠାକାର ବିଧାନସଭା ସଦସ୍ୟ ଭାବେ କାମ କରିବା ପାଇଁ ସରକାରଙ୍କ ତରଫରୁ ମନୋନୀତ ହୋଇଥିଲେ । ୧୯୫୨ ମସିହାରେ ଲକ୍ଷ୍ମଣ ଗୌଡ଼ (ପଦ୍ମଗିରି) ଏ ଅଞ୍ଚଳର ବିଧାନସଭା ସଦସ୍ୟ ଭାବେ ନିର୍ବାଚିତ ହୋଇଥିଲେ । ୧୯୬୭ ମସିହାରେ ଅଖଣ୍ଡ ମାଲକାନଗିରିରୁ ଗଙ୍ଗାଧର ମାଢ଼ି ବିଧାନସଭାକୁ ନିର୍ବାଚିତ ହେବାର ଗୌରବ ଲାଭ କରିଥିଲେ । ୧୯୭୪ ମସିହା ବେଳକୁ ମାଲକାନଗିରି ନିର୍ବାଚନ ମଣ୍ଡଳୀ ଦୁଇଭାଗରେ ବିଭକ୍ତ ହୋଇ ଚିତ୍ରକୋଣ୍ଡା (ସଂରକ୍ଷିତ-ଆଦିବାସୀ) ଓ ମାଲକାନଗିରି (ସଂରକ୍ଷିତ ହରିଜନ )ନିର୍ବାଚନମଣ୍ଡଳୀରେ ପରିଣତ ହେଲା ।

**ଗଙ୍ଗାଧର ମାଢ଼ି, ପିତା- ଭୀମା ମାଢ଼ି, ମାତା- ଗାଙ୍ଗାମା , ଶିକ୍ଷାଗତ ଯୋଗ୍ୟତା-ସପ୍ତମ ଶ୍ରେଣୀ, ଗ୍ରାମ-କହୁଗୁଡ଼ା, ମାଲକାନଗିରି ।**

ସ୍ଥାନୀୟ ମଧ୍ୟ ଇଂରାଜୀ ସ୍କୁଲରୁ ମାଇନର ପାଶ୍ କରିଥିବା ଏହି ବିଶିଷ୍ଟ ଆଦିବାସୀ ନେତା କୋୟା ସମ୍ପ୍ରଦାୟରେ ୧୯୩୬ ମସିହା ଏପ୍ରିଲ ମାସରେ ଜନ୍ମ ଗ୍ରହଣ କରିଥିଲେ । ସାଧାରଣ ଠିକାଦାର ଜୀବନରୁ ରାଜନୀତିରେ ପ୍ରବେଶ କରି ୧୯୬୭ ମସିହାରେ ପ୍ରଥମ ନିର୍ବାଚନ ଲଢ଼େଇରେ ବିଜୟ ହାସଲ କରି ସମଗ୍ର ମାଲକାନଗିରିର ବିଧାୟକ ଭାବେ ଲୋକପ୍ରିୟତା ହାସଲ କରିଥିଲେ । ସେ ୧୯୭୧ (ଅଖଣ୍ଡ ମାଲକାନଗିରିରୁ) ଓ ୧୯୭୪,

୧୯୮୦,୧୯୮୫ ଏବଂ ୧୯୯୫ ମସିହାରେ ଚିତ୍ରକୋଣ୍ଡା ବିଧାନସଭା ଆସନରୁ ନିର୍ବାଚିତ ହୋଇ ପାରିଥିଲେ । ସେ ମାଲକାନଗିରି ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଚେଷ୍ଟା କରିଥିଲେ । ଏଠାରେ ଉଲ୍ଲେଖନୀୟ ଯେ ଏହି ମହାବିଦ୍ୟାଳୟ ସ୍ୱୀକୃତି ପାଇଁ ସେତେବେଳେ ଆବଶ୍ୟକ ହେଉଥିବା ଏକଲକ୍ଷ ଟଙ୍କାକୁ ତତ୍କାଳୀନ ଫରେଷ୍ଟ କରପୋରେସନର ଏମ୍.ଡ଼ି. ପ୍ରଫୁଲ୍ଲ ଚନ୍ଦ୍ର ସାହୁ ସଂଗ୍ରହ କରିବା ପାଇଁ ବହୁ କଷ୍ଟ ସ୍ୱୀକାର କରିଥିଲେ । ଏହି ମହାବିଦ୍ୟାଳୟର ଅନ୍ୟତମ ପ୍ରତିଷ୍ଠାତା ସଭ୍ୟମାନେ ହେଲେ ପ୍ରଫୁଲ୍ଲ ପାଣିଗ୍ରାହୀ, ଜି.ବାଲାରାଜୁ, ବି. ଏସ୍. ଏନ୍. ପଟ୍ଟନାୟକ, ରାମ ନାରାୟଣ ରଥ ଏବଂ ଆଉ କେତେ ଜଣ ବାଦାନ୍ୟ ବ୍ୟକ୍ତି । ମାଢ଼ି ବାବୁଙ୍କ ନାମରେ ଏଠାରେ ଏକ ପାଠାଗାର ରହିଛି ।

୧୯୭୪ ମସିହାରେ ବିଧାନସଭା ପାଇଁ **ନାକା କାନାୟା** ଜନତା ଦଳ ତରଫରୁ ନିର୍ବାଚନ ଲଢ଼ି ମାଲକାନଗିରିରୁ ନିର୍ବାଚିତ ହୋଇଥିଲେ । ଏହି ଆସନରୁ ସେ ପୁଣି ୧୯୭୭ ମସିହା ୧୯୯୦ ମସିହା ନିର୍ବାଚନରେ ଜୟଲାଭ କରିଥିଲେ । ୧୯୮୦ ମସିହାରେ ତାଙ୍କର ସାନ ଭାଇ **ନାକା ଲଚ୍ଛାମାୟା** କଂଗ୍ରେସ ଟିକେଟ ପାଇ ବିଧାନସଭା ନିର୍ବାଚନରେ ମାଲକାନଗିରିରୁ ନିର୍ବାଚିତ ହୋଇଥିଲେ । ୧୯୮୫ ମସିହା ବିଧାନସଭା ନିର୍ବାଚନ ବେଳେ ସ୍ୱାଧୀନ ପ୍ରାର୍ଥୀ ଭାବେ **ନଦୀୟା ବାସୀ ବିଶ୍ୱାସ** ମାଲକାନଗିରିରୁ ଜୟଯୁକ୍ତ ହୋଇଥିଲେ । ଏହି ଆସନରୁ ବିଧାନସଭାକୁ ୧୯୯୨ ଉପନିର୍ବାଚନ ଓ ୧୯୯୫ ମସିହା ନିର୍ବାଚନରେ **ଅରବିନ୍ଦ ଢାଲି** ବି.ଜେ.ପି. ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇ ପାରିଥିଲେ । ଏହି ଅଞ୍ଚଳରେ ବହୁଦିନ ଧରି ଲୋକଙ୍କର ଭୋଟ ବିଷୟରେ ଧାରଣା ନଥିଲା । ବର୍ତ୍ତମାନ ସୁଦ୍ଧା ଏଠାକାର ବଣ୍ଡା ମାନେ ଭୋଟଦାନ ବେଳେ ପଇସା ମାଗନ୍ତି ।

**ପ୍ରହଲ୍ଲାଦ ଦୋରା, ପିତା- ଗୁରୁ ଦୋରା, ଗ୍ରାମ-ପାଙ୍ଗାମ, ପୂର୍ବତନ ଉପ-ବାଚସ୍ପତି, ଓଡ଼ିଶା ବିଧାନ ସଭା ।**

ସେ ଓକିଲାତି ଜୀବନରୁ ରାଜନୀତିରେ ପ୍ରବେଶ କରିଥିଲେ । ଅନେକ ଦିନ ଧରି ମାଲକାନଗିରି ରାଜନୀତିକୁ ନିଜ ଅକ୍ତିଆରରେ ରଖିବା ପାଇଁ

ସମର୍ଥ ହୋଇପାରିଛନ୍ତି । ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଆସୁଥିବା ଏହି ନେତାଙ୍କ ଉଦ୍ୟମରେ ବହୁ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଥିବା ସାଙ୍ଗକୁ ଗୋବିନ୍ଦପାଲ୍ଲୀଠାରେ ଏକ ମହାବିଦ୍ୟାଳୟ ସ୍ଥାପନ କରାଯାଇ ପାରିଛି । ମାଲକାନଗିରିକୁ ଏକ ଜିଲ୍ଲା ଭାବେ ମାନ୍ୟତା ଦେବା ପାଇଁ ସେ ଚେଷ୍ଟା କରିଥିଲେ । ୧ ୯ ୯ ୦ ମସିହା ବିଜୁପଟ୍ଟନାୟକ-ମନ୍ତ୍ରୀମଣ୍ଡଳରେ ନିଜର ଦକ୍ଷତା ପାଇଁ ଓଡ଼ିଶା ବିଧାନସଭାର ଉପବାଚସ୍ପତି ଭାବେ ନିର୍ବାଚିତ ହୋଇ ପାରିଥିଲେ । ତା ୨୩-୩-୧ ୯ ୯ ୫ରୁ ଜନତା ଦଳ ଛାଡ଼ି ଭାରତୀୟ ଜନତା ପାର୍ଟିରେ ସେ ଯୋଗ ଦେଇଛନ୍ତି ।

୧ ୯ ୯ ୭ ମସିହାରେ ପ୍ରଥମ ଥର ପାଇଁ ମାଲକାନଗିରି ଜିଲ୍ଲା ପରିଷଦ ଗଠିତ ହୋଇଥିଲା । ଏଥିରେ ନବୀନ ଚନ୍ଦ୍ର ମାଡ଼କାମୀ ଅଧ୍ୟକ୍ଷ ଓ ପଦ୍ମିନୀ ମୁଦୁଲି ଉପାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲେ । ଏହି ଆସନଟି ଆଦିବାସୀଙ୍କ ପାଇଁ ସଂରକ୍ଷିତ ଅଟେ ।

୧୮୭୨ ମସିହା ପର ଠାରୁ ଇଂରେଜ ସରକାରଙ୍କ ଜଣେ ତହସିଲଦାର ଏହାର ଶାସନ କାର୍ଯ୍ୟ ବୁଝାବୁଝି କରୁଥିଲେ । ୧୯୪୨ ମସିହାରେ ଏଠାରେ ତହସିଲ କାର୍ଯ୍ୟାଳୟର ପକ୍କା ଘର ନିର୍ମିତ ହୋଇଥିଲା । ୧୯୬୨ ମସିହା ଜାନୁଆରୀ ମାସ ୧ ତାରିଖ ଦିନ ଓଡ଼ିଶାର ତତକାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଏହାକୁ ଏକ ସବ୍-ଡ଼ିଭିଜନ ଉଦ୍‌ଘାଟନ କରିଥିଲେ । ତାହାର ୩୦ ବର୍ଷ ପରେ ଅର୍ଥାତ ୧ ୯ ୯ ୨ ମସିହା ଅକ୍ଟୋବର ୨ ତାରିଖରେ ତାଙ୍କରି ହାତରେ ପୁଣି ମାଲକାନଗିରି ଏକ ଜିଲ୍ଲା ଭାବରେ ପରିଣତ ହୋଇଥିଲା । ଦୀର୍ଘଦିନ ଧରି ଖଗପତି ପ୍ରଧାନୀ ଏଠାକାର ଲୋକସଭା ସଦସ୍ୟ ଅଛନ୍ତି ।

୧ ୯୭୦ ମସିହା ଡିସେମ୍ବର ମାସ ୧ ତାରିଖ ଦିନ ମାଲକାନଗିରି ସହର ଏକ ବିଜ୍ଞାପିତ ଅଞ୍ଚଳ ପରିଷଦ ଭାବରେ ସ୍ୱୀକୃତି ଲାଭ କରିଥିଲା । ବାଲିମେଲା ସହରାଞ୍ଚଳକୁ ନେଇ ମଧ୍ୟ ପରେ ବିଜ୍ଞାପିତ ଅଞ୍ଚଳ ପରିଷଦ ଗଠନ କରାଯାଇ ଉଭୟ ଅନୁଷ୍ଠାନ ପାଇଁ ନିର୍ବାଚନ ମାଧ୍ୟମରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥାକୁ ସୁଦୃଢ଼ କରାଯାଇ ପାରିଛି । ❖❖❖

# ମାଲକାନଗିରିର ସ୍ୱାଧୀନତା ସଂଗ୍ରାମୀ
## (ଯେଉଁମାନଙ୍କ ପାଇଁ ଆମେ ଗର୍ବିତ)

ଦେଶ ସ୍ୱାଧୀନ ପାଇଁ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ସଂଗ୍ରାମ ହୋଇଥିଲା ସେଥିରେ ଏହି ଶହୀଦ ମାଟିର ଯଥେଷ୍ଟ ଅବଦାନ ରହିଛି । ଶହ ଶହ ସଂଖ୍ୟାରେ ଆଦିବାସୀ ନେତାମାନେ ନିଜର ସବୁକିଛି କାମକୁ ପଛରେ ପକାଇ ସ୍ୱାଧୀନତା ସଂଗ୍ରାମ ପାଇଁ ଅଗେଇ ଆସିଥିଲେ । ସେମାନେ ସମସ୍ତେ ମୁଖ୍ୟତଃ ଗାନ୍ଧିବାଦୀ ଥିଲେ । ସେମାନେ ଖଦଡ଼ ଟୋପି ସହ ଖଦଡ଼ ଲୁଗା ପିନ୍ଧୁ ଥିଲେ ଓ ପ୍ରତି ଦିନ ରାମଧୁନ ଗାଉଥିଲେ । ଅହିଂସା, ସତ୍ୟ ଓ ବ୍ରହ୍ମଚାର୍ଯ୍ୟର ତ୍ରିସତ୍ୟ ଉପରେ ସେମାନଙ୍କ ଜୀବନ ଆଧାରିତ ଥିଲା । ସେମାନେ ବହୁତ ସରଳ, ପରୋପକାରୀ, କଷ୍ଟ ସହିଷ୍ଣୁ ତଥା ସଂଗ୍ରାମୀ ଥିଲେ । ସେମାନଙ୍କ ଜୀବନର ଲକ୍ଷ ଥିଲା ଇଂରେଜମାନଙ୍କୁ ଏ ଦେଶରୁ ହଟାଇବା, ଅଧିକାଂଶ ସମୟରେ ଇଂରେଜ ଫୌଜର ନିର୍ମମ ଲାଠି ପ୍ରହାରରେ ଅଧିକାଂଶଙ୍କ ପିଠି ଫାଟି ଯାଉଥିଲା । ସେମାନଙ୍କୁ ଦିନ ଦିନ ଧରି ଭୋକ ଉପବାସରେ ଥାନାରେ ଅଟକ ରଖାଯାଉଥିଲା । ତାଙ୍କର ସମସ୍ତ ଜମିବାଡ଼ିକୁ ବ୍ୟାଜାପ୍ତି କରାଯାଉଥିଲା। ସେମାନଙ୍କର ଘରର ଜିନିଷପତ୍ର ନିଲାମ କରିବା ସହ ଘରେ ଥିବା ଗୋରୁଗାଈଙ୍କୁ ଛଡ଼ାଇ ନିଆଯାଉଥିଲା ।

ଏହି ଅକଥନୀୟ ଅତ୍ୟାଚାର ଓ ଅନ୍ୟାୟକୁ ସହି ଯାଇ ତଥାପି ସେମାନେ ସଂଗ୍ରାମରେ ଲିପ୍ତ ହେଉଥିଲେ । ଜଣେ ସଂଗ୍ରାମୀଙ୍କ ପାଇଁ ତାଙ୍କ ପରିବାରକୁ ମଧ୍ୟ ପୋଲିସ୍ ହଇରାଣ ହରକତ କରୁଥିଲେ । ଏପରିକି ଭୋକ ଉପାସରେ ରହି କେବଳ ଜଙ୍ଗଲରୁ ବାଉଁଶ କରଡ଼ି(ଗଜା),ଫଳମୂଳ ଓ କନ୍ଦା ଖାଇ ସେମାନେ ସଂଗ୍ରାମ ଅବ୍ୟାହତ ରଖୁଥିଲେ । ଏଠାରେ ସ୍ମରଣଯୋଗ୍ୟ

ଯେ ଲକ୍ଷ୍ମଣ ନାୟକଙ୍କୁ ଜେଲ୍ ନିଆଗଲା ବେଳେ ତାଙ୍କ ପୁଅ ରଘୁ ନାୟକଙ୍କୁ ମଧ୍ୟ ଲାଠି ମାଡ଼ରେ ଜଖମ କରାଯାଇଥିଲା । ତାଙ୍କର ଜମିବାଡ଼ି ଛଡ଼ାଇ ନିଆଯିବା ସହ ଘରେ ଥିବା ସମସ୍ତ ଛେଳି ମେଣ୍ଢାକୁ ପୋଲିସ ଜବତ କରି ନେଇଯାଇଥିଲେ ।

ନିମ୍ନରେ ଏହି ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ତାଲିକା ପ୍ରଦାନ କରାଯାଉଛି । ଏହି ତାଲିକାରେ କେବଳ ଯେଉଁମାନେ ଜେଲ ଯାଇଥିଲେ, ସେମାନଙ୍କର ନାମ ଉଲ୍ଲେଖ କରାଯାଇଛି ।
**(ଏହା ବ୍ୟତୀତ ଅନେକ ସ୍ୱାଧୀନତା ସଂଗ୍ରାମୀ ମଧ୍ୟ ରହିଛନ୍ତି ଯେଉଁମାନଙ୍କର କି ଏକ ସୁଦୀର୍ଘ ତାଲିକା ସଂଗ୍ରହ କରାଯାଇଥିଲେ ମଧ୍ୟ ଏଠାରେ ସ୍ଥାନୀତ କରାଯାଇନାହିଁ । କିନ୍ତୁ, ସେମାନଙ୍କର ତ୍ୟାଗ, ସାହସ ଓ ସଂଗ୍ରାମ କୌଣସି ଗୁଣରେ କମ୍ ନଥିଲା ।)**

- **ଅର୍ଜୁନ ନାୟକ: ପିତା- ପୁରନ୍ଦର ମାଝୀ, ଗ୍ରା- ଉଦୟଗିରି, ପୋ- ସାଲିମି, ଜିଲ୍ଲା-ମାଲକାନଗିରି ।**
  ଏହି ମହାନ ସ୍ୱାଧୀନତା ସଂଗ୍ରାମୀ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରି ଗିରଫ ହୋଇଥିଲେ । ତାଙ୍କୁ ୨୦ ବର୍ଷ ସଶ୍ରମ କାରାଦଣ୍ଡାଦେଶ ହୋଇଥିଲା । ଦେଶ ପାଇଁ ୩ ବର୍ଷ ୯ ମାସ ଜେଲ ଖଟି ଖଲାସ ହୋଇଥିଲେ ।

- **ଅର୍ଜୁନ ପୂଜାରୀ : ପି- ଡମ୍ବ ପୂଜାରୀ, ଗ୍ରା- କୁଲେର, ପୋ- ସାଲିମି, ଥା-ମାଥିଲି, ଜି- ମାଲକାନଗିରି**
  ସ୍ୱାଧୀନତା ସଂଗ୍ରାମରେ ଜଣେ ସକ୍ରିୟ ସଭ୍ୟ ଭାବେ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ସତ୍ୟାଗ୍ରହ କରି ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ବ୍ରିଟିଶ ସରକାର ତାଙ୍କୁ ୨୦ ବର୍ଷ ଜେଲ ଦଣ୍ଡ ଓ ୧୦୦ ଟଙ୍କା ଜୋରିମାନା ଦଣ୍ଡରେ ଦଣ୍ଡିତ କରିଥିଲେ ହେଁ ଜେଲ୍‌ରେ ୩ ବର୍ଷ ୮ ମାସ ସଜା ଖଟି ଖଲାସ ହୋଇଥିଲେ ।

- **ଅର୍ଜୁନ ନାୟକ : ପିତା- ବୁଦୁରା ନାୟକ, ଗ୍ରା- ଲିକିଟିଗୁଡ଼ା, ପୋ- ସାଲିମି, ଥା-ମାଥିଲି, ଜି- ମାଲକାନଗିରି ।**

ଶ୍ରୀଯୁକ୍ତ ନାୟକ ଜଣେ ଆଦର୍ଶ ଦେଶଭକ୍ତ ଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ୨୦ ବର୍ଷ ଜେଲ ଦଣ୍ଡ ପାଇଁ ଆଦେଶ ପାଇଥିଲେ । ପରେ କୋରାପୁଟ ଜେଲରେ ୩ ବର୍ଷ ୯ ମାସ ସଜା ଭୋଗିବା ପରେ ତାଙ୍କୁ ଛାଡ଼ି ଦିଆଯାଇଥିଲା ।

☛ **ଅର୍ଜୁନ ପୂଜାରୀ : ପିତା- ସନିଆ ପୂଜାରୀ, ଗ୍ରା- ସାନଗୁମ୍ମା, ପୋ - ସାଲିମି, ଜିଲ୍ଲା- ମାଲକାନଗିରି ।**

ସେ ଜଣେ ମହାନ ଗାନ୍ଧିବାଦୀ ଆଦିବାସୀ ନେତା ଥିଲେ । ମାଲକାନଗିରି ଅଞ୍ଚଳରେ ୧୯୩୯ ମସିହାରେ ଦୁଇଥର ସତ୍ୟାଗ୍ରହ କରି ୩୦ ଟଙ୍କା ଅର୍ଥ ଦଣ୍ଡ ସହ ୩ ମାସ ଜେଲ୍ ଯାଇଥିଲେ ଓ ୧୯୪୨ ମସିହାରେ ହୋଇଥିବା ଭାରତ ଛାଡ଼ ଆନ୍ଦୋଳନ ବେଳେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ଦୁଇ ବର୍ଷ ଜେଲ୍ ଦଣ୍ଡ ପାଇଥିଲେ ।

☛ **ଅର୍ଜୁନ ନାୟକ : ପିତା- ସନ୍ୟାସୀ ନାୟକ, ଗ୍ରାମ- ତେନ୍ତୁଳିଗୁମା, ପୋ- ସାଲିମ, ଜିଲ୍ଲା- ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବାରୁ ଅନେକ ଥର ଲାଠି ମାଡ଼ ଖାଇଥିଲେ । ବ୍ରିଟିଶ ଅଦାଲତ ତାଙ୍କୁ ୨୦ ବର୍ଷ ଜେଲ୍ ଦଣ୍ଡାଦେଶ ଦେଇଥିଲେ । ସେ ସମୁଦାୟ ୩ ବର୍ଷ ୮ ମାସ ଜେଲ୍ ଖଟି ଖଲାସ ହୋଇଥିଲେ ।

☛ **ଅର୍ଜୁନ ଝିମିଲି : ପିତା- ବାଘମାରୁ ଝିମିଲି, ଗ୍ରାମ- ଗାଟ୍ଟୁଗୁଡ଼ା, ପୋ- ଭେଜାଗୁଡ଼ା, ଜିଲ୍ଲା-ମାଲକାନଗିରି ।**

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ପୋଲିସ ଲାଠିରେ ସାଂଘାତିକ ଭାବେ ଆହତ ହୋଇଥିଲେ । ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ ଜେଲ୍ ଖଟି ଘରକୁ ଫେରିବା ପରେ ମୃତ୍ୟୁ ବରଣ କରିଥିଲେ ।

☛ **ଅର୍ଜୁନ ଭୂମିଆ : ପିତା- ଭାନୁ ଭୂମିଆ, ଗ୍ରାମ- ଲୁଲେର, ପୋ: ସାଲିମ, ଥା- ମାଥିଲି, ଜି: ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନ ବେଳେ ପୋଲିସ ଦ୍ୱାରା ଗିରଫ୍ ହୋଇ ୯ ମାସ ଜେଲରେ ରହିଥିଲେ ଏବଂ ଜୋରିମାନା ବାବଦକୁ ନିଜର ଦୁଇ ହଳ ବଳଦ ବିକ୍ରି କରି ପଇଠ କରିଥିଲେ ।

- **ଅର୍ଜୁନ କାଲାକୁରା : ପି: ଭୀମା କାଲାକୁରା , ଗ୍ରା- ଭଣ୍ଡାରୀ ପାଗାମ, ପୋ- ଭେଜାଗୁଡ଼ା, ଥାନା- ମାଲକାନଗିରି, ଜି- ମାଲକାନଗିରି ।**
  ସ୍ୱାଧୀନତା ସଂଗ୍ରାମର ଜଣେ ଅନ୍ୟତମ ଯୋଦ୍ଧା ଥିଲେ । ୧୯୪୨ ମସିହାରେ ହୋଇଥିବା ସତ୍ୟାଗ୍ରହରେ ଯୋଗ ଦେଇଥିବାରୁ ଇଂରେଜ ସରକାର ତାଙ୍କୁ ୨୦ ବର୍ଷ ସଜା ଶୁଣାଇଥିଲେ । ପରବର୍ତ୍ତୀ କାଳରେ ସେ ୩ ବର୍ଷ ୮ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

- **ଅର୍ଜୁନ ସିଅ : ପି- ଗଙ୍ଗା ସିଅ, ଗ୍ରା- ଭଣ୍ଡାରୀ ପାଗାମ, ପୋ: ଭେଜାଗୁଡ଼ା, ଥା- ମାଲକାନଗିରି, ଜି- ମାଲକାନଗିରି ।**
  ୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ୮ ମାସ ଜେଲ ଦଣ୍ଡ ଭୋଗ କରି ଖଲାସ ହୋଇଥିଲେ ।

- **ଉର୍ମା ବାକା : ପୀ- ଗୋବର୍ଦ୍ଧନ ବାକା, ଗ୍ରା- ନାୟକଗୁଡ଼ା, ପୋ- ଭେଜାଗୁଡ଼ା, ଥାନା- ମାଲକାନଗିରି, ଜି- ମାଲକାନଗିରି ।**
  ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ସତ୍ୟାଗ୍ରହ କରିଥିବାରୁ ୩ ବର୍ଷ ଜେଲଦଣ୍ଡ ଭୋଗିବା ସହ ୯୦ ଟଙ୍କା ଅର୍ଥ ଦଣ୍ଡ ପଇଠ କରିଥିଲେ ।

- **ଇଂଗା କାଣ୍ଡିକି : ପି- ଟୁକୁଡୁ କାଣ୍ଡିକି, ଗ୍ରା: ଭଣ୍ଡାରୀ ପାଗାମ୍, ପୋ- ଭେଜାଗୁଡ଼ା, ଥା-ମାଲକାନଗିରି, ଜି-ମାଲକାନଗିରି ।**
  ମାଲକାନଗିରି ଅଞ୍ଚଳରେ ସତ୍ୟାଗ୍ରହ କରି ୯ ମାସ ଜେଲ ଦଣ୍ଡ ଭୋଗିବା ସହ ୨୦ ଟଙ୍କା ଜୋରିମାନା ଦେଇଥିଲେ ।

- **ଉଦୟନାଥ ଭୂମିଆ : ପି- ମଙ୍ଗଳା ଭୂମିଆ, ଗ୍ରା-ଭଇଁଷାଘାଟ, ପୋ- ସାଲିମ, ଥା- ମାଥିଲି, ଜି- ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମରେ ସେ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଗୋରା ସରକାର କ୍ରୋଧିତ ହୋଇ ତାଙ୍କୁ ୨୦ ବର୍ଷ ଜେଲ୍ ଓ ୩୦ ଟଙ୍କା ଜୋରିମାନା ପାଇଁ ଆଦେଶ ଦେଇଥିଲେ । ସେ ଏହି ସଜା ଭୋଗୁଥିବା ଅବସ୍ଥାରେ ହିଁ ଜେଲରେ ମୃତ୍ୟୁବରଣ କରିଥିଲେ

☛ **ଓମା ବଟେ : ପି- ଡମ୍ବରୁ ବଟେ, ଗ୍ରା- ମାଳୀଗୁଡ଼ା, ପୋ- ଭେଜାଗୁଡ଼ା, ଥା-ମାଲକାନଗିରି ଜି-ମାଲକାନଗିରି ।**
ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିଥିବାରୁ ୨୦ ଟଙ୍କା ଜୋରିମାନା ସହ ୯ ମାସ ଜେଲଦଣ୍ଡ ଭୋଗିଥିଲେ ।

☛ **କାନ୍ଦରା ପୂଜାରୀ : ପି- ଚନ୍ଦ୍ର ପୂଜାରୀ, ଗ୍ରା - ସାନଗୁମାଗ୍ଭ ଟେକଗୁଡ଼ା, ପୋ- ସାଲିମି, ଥା- ମାଥିଲି, ଜି-ମାଲକାନଗିରି ।**
ମାଲକାନଗିରି ଅଞ୍ଚଳରେ ଲକ୍ଷ୍ମଣ ନାୟକଙ୍କ ଆହ୍ୱାନ କ୍ରମେ ୧୯୪୨ ମସିହା ଅଗଷ୍ଟ ମାସରେ ହୋଇଥିବା ସତ୍ୟାଗ୍ରହ ବେଳେ ପୋଲିସ ଦ୍ୱାରା ଗିରିଫ ହୋଇ ୮ ମାସ ଜେଲଦଣ୍ଡ ପାଇଥିଲେ ।

☛ **କୋଣ୍ଡେ ସୁନାଝରିଆ : ପି- ଜଟୁ ସୁନାଝରିଆ, ଗ୍ରା- କିଆଙ୍ଗ, ପୋ- ସାଲିମି, ଥା-ମାଥିଲି, ଜି-ମାଲକାନଗିରି ।**
୧୯୪୨ ମସିହା ସତ୍ୟାଗ୍ରହ ବେଳେ ଆଦିବାସୀମାନଙ୍କର ମନରେ ସ୍ୱାଧୀନତା ଭାବ ଜାଗ୍ରତ କରି ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବା ଅଭିଯୋଗରେ ଗିରଫ ହୋଇ ୨୦ ବର୍ଷ ଜେଲଦଣ୍ଡ ପାଇଁ ଆଦେଶ ପାଇଥିଲେ । ଏହି ଜେଲଦଣ୍ଡ ଭୋଗୁଥିବା ସମୟରେ କୋରାପୁଟ ଠାରେ ତାଙ୍କର ମୃତ୍ୟୁ ହୋଇଥିଲା ।

☛ **କୁସନ ପୂଜାରୀ : ପି- ଗୋବିନ୍ଦ ପୂଜାରୀ, ଗ୍ରା-ଭଇଁଷାଘାଟ, ପୋ- ସାଲିମି, ଥା-ମାଥିଲି, ଜି-ମାଲକାନଗିରି ।**
୧୯୪୨ ମସିହା ଅଗଷ୍ଟ ମାସରେ ମାଥିଲି ଥାନା ଆଗରେ ଲକ୍ଷ୍ମଣ ନାୟକଙ୍କ ସହ ସତ୍ୟାଗ୍ରହ କରୁଥିବା ବେଳେ ପୋଲିସ ଗୁଳିରେ ତାଙ୍କର ଗୋଟିଏ ଗୋଡ଼ ନଷ୍ଟ ହୋଇଯାଇଥିଲା । ସେ ଇଂରେଜ ଅଦାଲତରେ

୨୦ ବର୍ଷ ପାଇଁ ଜେଲ ଦଣ୍ଡ ଆଦେଶ ପାଇଥିଲେ । ମାତ୍ର ୩ ବର୍ଷ ୮ ମାସ ପରେ ତାଙ୍କୁ ଛାଡ଼ି ଦିଆଯାଇଥିଲା ।

☛ **କେନ୍ଦୁ ନାୟକ : ପି- ବାଗା ନାୟକ, ଗ୍ରା-ସରିଗିଗୁଡ଼ା, ପୋ-ସାଲିମି, ଥା-ମାଥିଲି, ଜି- ମାଲକାନଗିରି ।**
ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ବ୍ରିଟିଶ ଅଦାଲତ ତାଙ୍କୁ ୫୦ ଟଙ୍କା ଜୋରିମାନା ସହ ୨୦ ବର୍ଷ କାରାଦଣ୍ଡ ଆଦେଶ ଦେଇଥିଲେ । ସେ ୩ ବର୍ଷ ୯ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

☛ **କସା ମାଡ଼କାମି : ପିତା- ଦେବା ମାଡ଼କାମି, ଗ୍ରା- କୋଟପୋଲ୍ଲୀ, ପୋ-ସାଲିମି, ଥା- ମାଥିଲି, ଜି-ମାଲକାନଗିରି ।**
୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ପୋଲିସ ଗୁଳିରେ ଆହତ ହୋଇଥିଲେ । ୧୫ ଟଙ୍କା ଜୋରିମାନା ଓ ୨୦ ବର୍ଷ କାରାବରଣ ପାଇଁ ଆଦେଶ ପାଇଥିଲେ ହେଁ ୩ ବର୍ଷ ୮ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ । ସେ ଜଣେ ସୁ ସଂଗଠକ ଥିଲେ ।

☛ **କୁସନ କପେ : ପି- ବୁଦୁରା କପେ, ଗ୍ରା- ଗଙ୍ଗଲା, ପୋ-ଭେଜାଗୁଡ଼ା, ଥା-ମାଲକାନଗିରି, ଜି-ମାଲକାନଗିରି ।**
ସ୍ୱାଧୀନତା ଆନ୍ଦୋଳନ ବେଳେ ସତ୍ୟାଗ୍ରହ କରିଥିବା ଅଭିଯୋଗରେ ୧୦ ଟଙ୍କା ଜୋରିମାନା ଓ ୬ ମାସ ଜେଲଦଣ୍ଡ ଭୋଗ କରିଥିଲେ ।

☛ **କେଶବ ଟେକ : ପି- ମୁଣ୍ଡା ଟେକ, ଗ୍ରା ଭଣ୍ଡାରୀପାଙ୍ଗାମ, ପୋ-ଭେଜାଗୁଡ଼ା, ଥା-ମାଲକାନଗିରି, ଜି-ମାଲକାନଗିରି ।**
ଗୋରା ସରକାର ବିରୁଦ୍ଧରେ ସତ୍ୟାଗ୍ରହ କରିଥିବାରୁ ୮ ମାସ କାରାବରଣ କରିଥିଲେ। ।

☛ **ଗୋପୀନାଥ ପୂଜାରୀ : ପି-ମୁକନ୍ଦ ପୂଜାରୀ, ଗ୍ରା-ତେନ୍ତୁଳୀଗୁମା**

ପୋ- ସାଲିମି, ଥା- ମାଥିଲି, ଜି-ମାଲକାନଗିରି ।

ସେ ଲକ୍ଷ୍ମଣ ନାୟକଙ୍କ ଜଣେ ଉତ୍ତମ ସହଯୋଗୀ ଥିଲେ । ୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନରେ ସେ ଯୋଗ ଦେଇ ଗିରଫ ହୋଇଥିଲେ । ତାଙ୍କୁ ଏଥିପାଇଁ ୮୦ ଟଙ୍କା ଜୋରିମାନା ସହ ୯ ମାସ ଜେଇଦଣ୍ଡ ଭୋଗିବାକୁ ପଡ଼ିଥିଲା ।

☛ ଗୁରୁ ଭୂମିଆ : ପି- ମଧୁ ଭୂମିଆ, ଗ୍ରା- ସାନଗୁମା, ପୋ-ସାଲିମି, ଥା- ମାଥିଲି, ଜି-ମାଲକାନଗିରି ।

ମାଥିଲି ଥାନା ଆଗରେ ହୋଇଥିବା ସତ୍ୟାଗ୍ରହ ବେଳେ ପ୍ରମୁଖ ଭୂମିକା ଗ୍ରହଣ କରି ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । ସେ ଅଦାଲତରେ ଦୋଷୀ ସାବ୍ୟସ୍ତ ହୋଇ ୩୦ ଟଙ୍କା ଜୋରିମାନା ସହ ୨୦ ବର୍ଷ କାରାବରଣ ପାଇଁ ଆଦେଶ ପାଇଥିଲେ । ଜେଲରେ ୩ ବର୍ଷ ୯ ମାସ କଟାଇଲା ପରେ ଖଲାସ ହୋଇଥିଲେ ।

☛ ଗୋପୀନାଥ ପୂଜାରୀ : ପି- ଚନ୍ଦ୍ର ପୂଜାରୀ, ଗ୍ରା- ସାନଗୁମା, ପୋ- ସାଲିମି, ଥା- ମାଥିଲି, ଜି- ମାଲକାନଗିରି ।

୧୯୩୯ ମସିହାରେ ଦୁଇଥର ସତ୍ୟାଗ୍ରହ କରି ୮ ମାସ କାଳ ଜେଲଦଣ୍ଡ ଭୋଗ କରିଥିଲେ । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ସତ୍ୟାଗ୍ରହ କରିଥିବାରୁ ତାଙ୍କୁ ୨୦ ବର୍ଷ ଜେଲଦଣ୍ଡ ଓ ୩୦ ଟଙ୍କା ଜୋରିମାନା ହୋଇଥିଲା । ଏହି ଦଣ୍ଡ ଭୋଗୁଥିବା ବେଳେ ଜେଲରେ ହିଁ ତାଙ୍କର ମୃତ୍ୟୁ ଘଟିଥିଲା ।

☛ ଗୋରା ଦଳେଇ : ପି- ଗୋପୀ ଦଳେଇ, ଗ୍ରା- ଖପରା, ପୋ- ସାଲିମ, ଥା-ମାଥିଲି, ଜି-ମାଲକାନଗିରି ।

ମାଲକାନଗିରି ଅଞ୍ଚଳରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଅନେକ ଥର ସତ୍ୟାଗ୍ରହ କରିଥିବା ହେତୁ ୮ ମାସ ଜେଲ ଦଣ୍ଡ ଭୋଗିଥିଲେ ।

☛ ଗୁରୁ ଦୁରୁଆ : ପି-ଆଇତା ଦୁରୁଆ, ଗ୍ରା- ରେଗାଓ୍ୱାଡ଼ା, ପୋ- ସାଲିମି, ଥା- ମାଥିଲି, ଜି-ମାଲକାନଗିରି ।

ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବାରୁ ଇଂରେଜ ସରକାର ତାଙ୍କୁ ୨୦ ବର୍ଷ ସଜା ଶୁଣାଇଥିଲେ । ସେ ଜେଲରେ ୧ ବର୍ଷ ରହିବା ପରେ ଖଲାସ ହୋଇଥିଲେ ।

- **ଗେଲା ଶିସା : ପି- ବୁଟି ଶିସା, ଗ୍ରା- ଆମ୍ବ ପଢ଼ା, ପୋ- ମାଥିଲି, ଥା- ମାଥିଲି, ଜି-ମାଲକାନଗିରି ।**
  ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଏକ ବର୍ଷ କାଳ କୋରାପୁଟ ଜେଲରେ କାରବରଣ କରି ଖଲାସ ହୋଇଥିଲେ ।

- **ଗୁରୁ କଟିଆ : ପି- ସନିଆ ଚଲାଣ, ଗ୍ରା-ଟିମସ୍ପୁଟ, ପୋ- ମାଥିଲି, ଥା-ମାଥିଲି, ଜି-ମାଲକାନଗିରି ।**
  ଲକ୍ଷ୍ମଣ ନାୟକଙ୍କ ଜଣେ ଉତ୍ତମ ସାଥୀ ଥିଲେ । ୧୯୪୨ ମସିହା ଅଗଷ୍ଟ ମାସରେ ହୋଇଥିବା ସତ୍ୟାଗ୍ରହ ବେଳେ ଭୀଷଣ ଲାଠି ପ୍ରହାର ଖାଇବା ସହ ଗିରଫ ହୋଇଥିଲେ । ବିଚାର ବେଳେ ୨୦ ବର୍ଷ କାରାଦଣ୍ଡ ପାଇଁ ଆଦେଶ ପାଇଥିଲେ । ସେ ଏହି ଦଣ୍ଡ ଭୋଗ କରୁଥିବା ବେଳେ ହିଁ ଜେଲରେ ମୃତ୍ୟୁବରଣ କରିଥିଲେ ।

- **ଗୋବିନ୍ଦ କପେ : ପି- ଲଇକନ ନାୟକ, ଗ୍ରା- ରାଉଁଲିଗୁଡ଼ା, ପୋ- ଭେକାଗୁଡ଼ା, ଥା-ମାଲକାନଗିରି, ଜି-ମାଲକାନଗିରି ।**
  ସେ ଜଣେ ଆଦର୍ଶ ଗାନ୍ଧୀବାଦି ନେତା ଥିଲେ । ୧୯୪୨ ମସିହା ସତ୍ୟାଗ୍ରହ ବେଳେ ୨୦ ଟଙ୍କା ଜୋରିମାନା ସହ ଜେଲଦଣ୍ଡ ଭୋଗିଥିଲେ । ସେ ୯ ମାସ ଜେଲରେ ରହିବା ପରେ ମୃତ୍ୟୁ ବରଣ କରିଥିଲେ ।

- **ଗୁରୁଗୌଡ଼ : ପି-ନୀଲଗୌଡ଼,ଗ୍ରା- ରାଉଁଲିଗୁଡ଼ା,ପୋ:ଭେକାଗୁଡ଼ା, ଥା-ମାଲକାନଗିରି,ଜି-ମାଲକାନଗିରି ।**
  ୧୯୩୮ ମସିହାରେ ସତ୍ୟାଗ୍ରହ କରି ୪ ମାସ ଜେଲ ଯାଇଥିଲେ । ୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମ ବେଳେ ସତ୍ୟାଗ୍ରହ କରିଥିବା ଅଭିଯୋଗରେ ୫୦ ଟଙ୍କା ଜୋରିମାନା ଦେଇଥିଲେ । ଆଣ୍ଡାମାନ

ଜେଲରେ କାରାବରଣ କରିବା ପାଇଁ ତାଙ୍କୁ ଆଦେଶ ହୋଇଥିଲା ।

☛ **ଗଙ୍ଗାଧର କପେ : ପି- ହାତୀରାମ କପେ, ଗ୍ରା- ଗଂଗଲା, ପୋ- ଭେଜାଗୁଡ଼ା, ଜି- ମାଲକାନଗିରି ।**
୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ଆଦିବାସୀମାନଙ୍କୁ ଗୋରା ସରକାର ବିରୁଦ୍ଧରେ ଏକତ୍ରିତ କରି ଥିବାରୁ ୮ ମାସ କାଳ କୋରାପୁଟ ଜେଲରେ କାରବରଣ କରିଥିଲେ ।

☛ **ଗଂଗାଧର ଝଲା : ପି-ମୁକୁନ୍ଦ ଝଲା, ଗ୍ରା- ବୀରଲକ୍ଷ୍ମଣପୁର, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
୧୯୪୦ ମସିହାରେ ତିନିଥର ସତ୍ୟାଗ୍ରହ କରି ୨ ବର୍ଷ ୧ମାସ ଜେଲ ଦଣ୍ଡ ଭୋଗି ସାରିବା ପରେ ପୁଣି ୧୯୪୨ ମସିହା ସତ୍ୟାଗ୍ରହ ଆନ୍ଦୋଳନ ବେଳେ ଗିରିଫ ହୋଇ ୧୦୦ ଟଙ୍କା ଜୋରିମାନା ଦେବା ସହ ୩ ବର୍ଷ କାଳ ଅଟକ ବନ୍ଦୀ ହୋଇ ରହିଥିଲେ । ୧୯୯୮ ମସିହାରେ ତାଙ୍କ ନାମରେ ଏକ ଉଚ୍ଚ ବିଦ୍ୟାଳୟ ସ୍ଥାପିତ ହୋଇଛି ।

☛ **ଗୋବିନ୍ଦ କପେ:ପି-ବୁଦ୍ରା କପେ,ଗ୍ରା-ଗଂଗଲା,ଜି-ମାଲକାନଗିରି**
ମାଥିଲି ଥାନା ଆଗରେ ୧୯୪୨ ମସିହା ଅଗଷ୍ଟ ମାସରେ ସତ୍ୟାଗ୍ରହ କରିଥିବା କାରଣରୁ ୨୦ ଟଙ୍କା ଜୋରିମାନା ସହ ୯ ମାସ ଜେଲ ଦଣ୍ଡ ପାଇଥିଲେ ।

☛ **ଗୋବିନ୍ଦ ଝଲା : ପି-ସନ୍ନୁ ଝଲା, ଗ୍ରା-ବୀରଲକ୍ଷ୍ମଣପୁର, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
ଗାଁ ଗାଁ ବୁଲି ଆଦିବାସୀ ଜନମାନସରେ ସ୍ୱାଧୀନତା ସଂଗ୍ରାମର ବାଣୀ ପ୍ରଚାରିତ କରି ବ୍ରିଟିଶ ସରକାରଙ୍କ କ୍ରୋଧର ଶିକାର ହୋଇଥିଲେ । ନିଜ ଘରର ସମସ୍ତ ଜିନିଷ ପତ୍ର ବିକି ୭୦ ଟଙ୍କା ଅର୍ଥ ଦଣ୍ଡ ପଇଠ କରିବା ସହ ୧ ବର୍ଷ ଜେଲ ଯାଇଥିଲେ ।

☛ **ଘେନୁଆ ଭୂମିଆ : ପି- ପଦ୍ମଲାମ ଭୂମିଆ, ଗ୍ରା- ସାଲିମି, ଜି- ମାଲକାନଗିରି ।**

ଲକ୍ଷ୍ମଣ ନାୟକଙ୍କ ଆହ୍ୱାନ କ୍ରମେ ୧ ୯ ୪ ୨ ମିସିହାରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବାରୁ ୧ ୦ ଟଙ୍କା ଜୋରିମାନା ସହ ୬ ମାସ କାଳ ଜେଲ ଦଣ୍ଡ ଭୋଗ କରିଥିଲେ ।

☛ **ଘେନୁଆ ଦୁରୁଆ : ପି- ମଙ୍ଗଳୁ ଦୁରୁଆ, ଗ୍ରା-ମହୁପଦର, ପୋ-ସାଲିମି, ଜି-ମାଲକାନଗିରି ।**

୧ ୯ ୪ ୨ ମସିହା ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସତ୍ୟାଗ୍ରହ କରିଥିବା ହେତୁ ୧ ୦ ଟଙ୍କା ଜୋରିମାନା ସହ ୬ ମାସ ଜେଲ ଦଣ୍ଡ ଭୋଗ କରିଥିଲେ ।

☛ **ଚଇତନ ପୂଜାରୀ : ପି- ଭଜମନ ପୂଜାରୀ, ଗ୍ରା- ସାନଗୁମାଳ, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଭୂମିଆ ଜାତିରେ ଜନ୍ମ ଗ୍ରହଣ କରିଥିଲେ ଏବଂ ଲକ୍ଷ୍ମଣ ନାୟକଙ୍କ ଜଣେ ପ୍ରଧାନ ସହଯୋଗୀ ଥିଲେ । ତାଙ୍କ ର ଅପରାଧକୁ ଗୁରୁତର ମନେ କରି ଇଂରେଜ ସରକାର ତାଙ୍କୁ ୫ ୦ ଟଙ୍କା ଜୋରିମାନା ସହ ୨ ୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ଦେଇଥିଲେ । ସେ ସମୁଦାୟ ୩ ବର୍ଷ ଓ ୯ ମାସ ଜେଳ ଖଟିଲା ପରେ ଖଲାସ ହୋଇଥିଲେ ।

☛ **ଚନ୍ଦ୍ର ଚଲାନ : ପି- ଧନ ଚଲାନ, ପୋ- ଗୋବିନ୍ଦପଲ୍ଲୀ, ଜି-ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ ୧ ୯ ୪ ୨ ମସିହାରେ ହୋଇଥିବା ସତ୍ୟାଗ୍ରହ ବେଳେ ଗିରଫ ହୋଇ ୯ ମାସ କାଳ ଜେଲ ଦଣ୍ଡ ଭୋଗ କରିଥିଲେ ।

☛ **ଚନ୍ଦ୍ର ଭୂମିଆ : ପି- ସନିଆ ଭୂମିଆ, ଗ୍ରା- ଭଇଁଷାଘାଟ, ପୋ-ସାଲିମି, ଜି-ମାଲକାନଗିରି ।**

ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବା ହେତୁ ୫ ମାସ କାଳ କୋରାପୁଟ ଜେଲରେ କାରାବରଣ କରିଥିଲେ ।

☛ **ଚନ୍ଦ୍ର ପୂଜାରୀ : ପିଃ ମୁକୁନ୍ଦ ପୂଜାରୀ, ଗ୍ରାମ- ସାନଗୁମ୍ମା, ପୋ- ସାଲିମି, ଜିଲ୍ଲା- ମାଲକାନଗିରି ।**

ନିଜର ସବୁକିଛି ତ୍ୟାଗ କରି ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିଥିଲେ । ଅନେକ ଥର ସତ୍ୟାଗ୍ରହ କରି ଜେଲ୍ ଯାଇଥିଲେ । ତାଙ୍କୁ ୩୦ଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ କାରାଦଣ୍ଡାଦେଶ ହୋଇଥିଲା । ସେ ତିନି ବର୍ଷ ୮ ମାସ ଜେଲରେ ରହି ଖଲାସ ହେବା ପରେ ମୃତ୍ୟୁବରଣ କରିଥିଲେ ।

☛ **ଚଇତନ ପୂଜାରୀ : ପି- ସନିଆ ପୂଜାରୀ, ଗା-କୁପିଲିଗୁଡ଼ା, ପୋ- ବେଢ଼େଗା, ଜି- ମାଲକାନଗିରି ।**

ସତ୍ୟାଗ୍ରହ କରି ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । ଏଥିପାଇଁ ତାଙ୍କୁ '୨୦ ଟଙ୍କା ଜୋରିମାନା ସହ ୯ ମାସ କାଳ ଜେଲ ଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ଜେଲରୁ ଖଲାସ ହେବା ପରେ ତାଙ୍କର ମୃତ୍ୟୁ ହୋଇଥିଲା ।

☛ **ଚନ୍ଦ୍ର ବାକା : ପିଃ ଗାଙ୍ଗା ବାକା, ଗ୍ରା-ନାୟକଗୁଡ଼ା, ଜି- ମାଲକାନଗିରି**

ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବାରୁ ୩୦ ଟଙ୍କା ଜୋରିମାନା ସହ ୯ ମାସ କାଳ ଜେଲ ଦଣ୍ଡ ଭୋଗ କରିଥିଲେ । ଜେଲରୁ ଫେରି ଆସିବା ପରେ ପରେ ତାଙ୍କର ମୃତ୍ୟୁ ହୋଇଥିଲା ।

☛ **ଚନ୍ଦ୍ର ଭୂମିଆ : ପିଃ ରଘୁ ଭୂମିଆ, ଗ୍ରା - ନାୟକ ଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ଉତ୍ସର୍ଗ କରିଥିବାରୁ ୧୦ ଟଙ୍କା ଜୋରିମାନା ସହ ୬ ମାସ ଜେଲ ଦଣ୍ଡ ଭୋଗିଥିଲେ ।

☛ **ଜଗନ୍ନାଥ ନାୟକ : ପିତା- ମଙ୍ଗଳା ନାୟକ, ଗ୍ରାମ-ବାକିଲିଗୁଡ଼ା, ପୋ-ସାଲିମ, ଜିଲ୍ଲା-ମାଲକାନଗିରି ।**

ନିଜର ସବୁ କିଛି ଦେଶ ପାଇଁ ଉତ୍ସର୍ଗ କରି ମାଥିଲି ଥାନା ଆଗରେ

ସତ୍ୟାଗ୍ରହ କରୁଥିବା ବେଳେ ପୋଲିସ ହାତରେ ଧରାପଡ଼ିଥିଲେ । ତାଙ୍କୁ ଏଥିପାଇଁ ୮ ମାସ କାଳ ଜେଲ ଯିବାକୁ ପଡ଼ିଥିଲା ।

- **ଜଗନ୍ନାଥ ଭୂମିଆ : ପିଃ ବୁଦ୍ରା ଭୂମିଆ, ଗ୍ରାମ- ଉଦୟଗିରି, ପୋ- ସାଲିମି, ଜିଲ୍ଲା- ମାଲକାନଗିରି ।**
  ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ବହୁବାର ଗିରଫ ହୋଇଥିଲେ । ଭାରତ ଛାଡ଼ ଆନ୍ଦୋଳନ ବେଳେ ନେତୃତ୍ୱ ନେଇଥିବାରୁ କୋରାପୁଟ ଜେଲରେ ୮ ମାସ କାରାଦଣ୍ଡ ଭୋଗ କରିଥିଲେ ।

- **ଜଗନ୍ନାଥ ନାୟକ : ପିତା- ମଙ୍ଗଳା ନାୟକ, ଗ୍ରାମ- କାଳିଆଗୁଡ଼ା,ପୋ- ଚେଡ଼େଙ୍ଗା, ଜିଲ୍ଲା-ମାଇକାନଗିରି ।**
  ସ୍ୱାଧୀନତା ସଂଗ୍ରାମର ସେ ଜଣେ ବିଶିଷ୍ଟ ନେତା ଥିଲେ । ଇଂରେଜ ସରକାର ଏଥିପାଇଁ କ୍ରୋଧିତ ହୋଇ ତାଙ୍କୁ ୩୦ ଟଙ୍କା ଅର୍ଥଦଣ୍ଡ ସହ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ଦେଇଥିଲେ । ସେ ୩ ବର୍ଷ ୮ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

- **ଜୟସିଂ ଭୂମିଆ : ପିତା- ଭାଦୁ ଭୂମିଆ, ଗ୍ରାମ- ସାରଙ୍ଗ ପାଲ୍ଲୀ, ପୋ-ସାଲିମି, ଜିଲ୍ଲା- ମାଲକାନଗିରି ।**
  ଲକ୍ଷ୍ମଣ ନାୟକଙ୍କ ଡାକରାରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିଥିଲେ । ପୋଲିସ ଅତ୍ୟାଚାର ସହି ଦେଶ ପାଇଁ ୮ ମାସ ଜେଲ ଦଣ୍ଡ ଭୋଗ କରିଥିଲେ ।

- **ଜୟରାମ ଫଟକା : ପିତା- ବୁଦ୍ରା ଫଟକା, ଗ୍ରା-ଗଙ୍ଗଲା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
  ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ସେତେବେଳେ ତାଙ୍କୁ ୨୦ ଟଙ୍କା ଜୋରିମାନା ସହ ୯ ମାସ କାଳ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା ।

- **ଜୟରାମ ଝୋଲା : ପି-ମୁକୁନ୍ଦ ଝୋଲା, ଗ୍ରା-ବୀରଲକ୍ଷ୍ମଣ ପୁର, ପୋ-ଭେଜାଗୁଡ଼ା, ଜି- ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନ ବେଳେ ସକ୍ରିୟ ଭୂମିକା ଗ୍ରହଣ କରିଥିବାରୁ ୭୦ ଟଙ୍କା ଜୋରିମାନା ସହ ୧ ବର୍ଷ ୬ମାସ ଜେଲଦଣ୍ଡ ଭୋଗ କରିଥିଲେ ।

☛ **ଟୁକୁଡୁ ମାଡ଼ି : ପିତା-ବାଗା ମାଡ଼ି, ପୋ-ସାଲିମି, ଜି-ମାଲକାନଗିରି ।**
ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ସେ ପୋଲିସ ଅତ୍ୟାଚାରର ଶିକାର ହୋଇଥିଲେ । ଏଥିପାଇଁ ୧୦ ଟଙ୍କା ଅର୍ଥ ଦଣ୍ଡ ସହ ୮ ମାସ ଜେଲ୍ ଖଟିଥିଲେ ।

☛ **ଟୁକୁଡୁ ପୂଜାରୀ : ପିତା- ବଣ୍ଡକା ପୂଜାରୀ, ଗ୍ରାମ-ଟେମୁରୁପାଲ୍ଲୀ, ପୋ-ସାଲିମି, ଜିଲ୍ଲା- ମାଲକାନଗିରି ।**
ନିଜର ଅସାଧାରଣ ବ୍ୟକ୍ତିତ୍ୱ ପାଇଁ ସ୍ୱାଧୀନତା ସଂଗ୍ରାମରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଦେଶ ପାଇଁ ସେ ଜେଲ୍ ଯାଇଥିଲେ । ଜେଲରେ ୯ ମାସ କାଳ ସଶ୍ରମ କାରାଦଣ୍ଡ ଭୋଗିବା ପରେ ସେଠାରେ ହିଁ ତାଙ୍କର ମୃତ୍ୟୁ ହୋଇଥିଲା ।

☛ **ଡମ୍ବରୁ ଖରା : ପିତା- ବଳରାମ ଖରା, ଗ୍ରା-ବାପନପାଲ୍ଲୀ, ପୋ-କାଲିମେଳା, ଜି-ମାଲକାନଗିରି ।**
୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନ ବେଳେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିବାରୁ ତାଙ୍କୁ ପୋଲିସ ଗିରଫ କରିଥିଲା । ସେ ଇଂରେଜ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବାରୁ ୨୦ ଟଙ୍କା ଜୋରିମାନା ସହ ୩ ବର୍ଷ ଜେଲ ଭୋଗ କରିଥିଲେ ।

☛ **ଦୀନବନ୍ଧୁ ପୂଜାରୀ : ପିତା- ବାୟା ପୂଜାରୀ, ଗ୍ରା- ସାନଗୁମା ନିକଟସ୍ଥ ବେଜିନୀଗୁଡ଼ା, ପୋ-ସାଲିମି, ଜି-ମାଲକାନଗିରି ।**
ଭାରତ ଛାଡ଼ ଆନ୍ଦୋଳନ ବେଳେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବା ହେତୁ, ୫୦ ଟଙ୍କା ଜୋରିମାନା ସହ ୧୦ ମାସ ଜେଲଦଣ୍ଡ ଭୋଗ କରିଥିଲେ । ପାଖରେ ପଇସା ନ ଥିବାରୁ ସେ ଏଥିପାଇଁ ନିଜର ଏକମାତ୍ର ସମ୍ବଳ ୩ ହଳ ଗୋରୁଙ୍କୁ ବିକ୍ରି କରି ଦେଇଥିଲେ ।

- **ଦାମ ଭୂମିଆ : ପିତା- ଅଦ୍ୟା ଭୂମିଆ, ଗ୍ରା- ସିନ୍ଧିଗୁଡ଼ା, ପୋ- ସାଲିମି, ଜି- ମାଲକାନଗିରି ।**
  ଜଣେ ଆଦର୍ଶ ଗାନ୍ଧୀବାଦି ନେତା ଭାବେ ବାରିଆଡ଼େ ଜଣାଶୁଣା ଥିଲେ । ୧୯୪୨ ମସିହାରେ ମାଥିଲି ଥାନା ଆଗରେ ହୋଇଥିବା ସତ୍ୟାଗ୍ରହ ବେଳେ ଆଦିବାସୀମାନଙ୍କୁ ଏକତ୍ରିତ କରି ଇଂରେଜ ସରକାରଙ୍କ ବିରୁଦ୍ଧରେ ସତ୍ୟାଗ୍ରହ କରିଥିବାରୁ ତାଙ୍କୁ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ହୋଇଥିଲା । ସେ ୩ ବର୍ଷ ୯ମାସ ଜେଲରେ ରହିବା ପରେ ଖଲାସ ହୋଇ ମୃତ୍ୟୁବରଣ କରିଥିଲେ ।

- **ଦିଆରୁ ଢୁରୁଆ : ପିତା- ବୁଦା ଢୁରୁଆ, ଗ୍ରାମ- ରେଗାଓ୍ୱାଡ଼ା, ପୋ- ସାଲିମି, ଜି- ମାଇକାନଗିରି ।**
  ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଦେଶ ପାଇଁ ଆଠ ମାସ କାଳ ଜେଲ ଯାଇଥିଲେ ।

- **ଦାମା କୋପେ : ପିତା- ବୁଦ୍ରା କୋପେ, ଗ୍ରାମ-ଗଙ୍ଗଲା, ପୋ- ଭେଜାଗୁଡ଼ା, ଜିଲ୍ଲା-ମାଲକାନଗିରି ।**
  ଲକ୍ଷ୍ମଣ ନାୟକଙ୍କର ଜଣେ ବିଶିଷ୍ଟ ଅନୁଗାମୀ ଥିଲେ । ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ୧୦ ଟଙ୍କା ଅର୍ଥ ଦଣ୍ଡ ସହ ୬ ମାସ ଜେଲ ଯାଇଥିଲେ ।

- **ଦୀନବନ୍ଧୁ ଫଟକା : ପିତା- ଦାମୋଦର ଫଟକା, ଗ୍ରାମ-ଗଙ୍ଗଲା, ପୋ-ଭେଜାଗୁଡ଼ା, ଜିଲ୍ଲା- ମାଲକାନଗିରି ।**
  ସେ ପୋଲିସ ନିର୍ଯାତନାର ଶିକାର ହୋଇଥିଲେ । ଦେଶ ପାଇଁ ୮ ମାସ ଜେଲ୍ ଦଣ୍ଡ ପାଇଥିଲେ ।

- **ଦାମା ପୂଜାରୀ : ପି-ଚନ୍ଦ୍ର ପୂଜାରୀ , ଗ୍ରା- ନାୟକଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
  ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ସତ୍ୟାଗ୍ରହ କରିଥିବା ଅଭିଯୋଗରେ ଗିରିଫ ହୋଇଥିଲେ । ଏଥିପାଇଁ ୨୦ ଟଙ୍କା

ଜୋରିମାନା ସହ ୯ ମାସ ଜେଲଦଣ୍ଡ ଭୋଗି ଜେଲରେ ହିଁ ମୃତ୍ୟୁବରଣ କରିଥିଲେ ।

**ଦୟା ବାକା : ପି- ଗୋବିନ୍ଦ ବାକା, ଗ୍ରା -ନାୟକଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**

ସେ ଜଣେ ଆଦର୍ଶ ଗାନ୍ଧୀବାଦି ନେତା ଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ୭ ମାସ କାଳ କୋରପୁଟ ଜେଲରେ ରହିଥିଲେ ।

**ଧନୁର୍ଜୟ ପୂଜାରୀ : ପି- ଭୀମା ପୂଜାରୀ, ଗ୍ରା- ବାକିଲିଗୁଡ଼ା, ପୋ- ସାଲିମି, ଜି-ମାଲକାନଗିରି ।**

ଭାରତଛାଡ଼ ଆନ୍ଦୋଳନ ବେଳେ ୧୯୪୨ ମସିହାରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବାରୁ ୪୫ ଟଙ୍କା ଜୋରିମାନା ସହ ୨୦ ବର୍ଷ ଜେଲ ଦଣ୍ଡାଦେଶ ପାଇଥିଲେ । ମାତ୍ର ୧ ବର୍ଷ କୋରାପୁଟ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

**ଧନ୍ଦଲା ପୂଜା : ପି- ମୋରୁ ପୂଜା, ଗ୍ରା- ପୂଜାପଲ୍ଲୀ, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**

ପୂଜାପଲ୍ଲୀ ଅଞ୍ଚଳରେ ଆଦିବାସୀମାନଙ୍କୁ ଏକତ୍ରିତ କରି ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବାରୁ ୧୫ ଟଙ୍କା ଜୋରିମାନା ସହ ୩ ମାସ କାଳ ସଜା ଭୋଗିଥିଲେ ।

**ନରସିଂହ ହରିଜନ : ପି- ରୁପଚନ ହରିଜନ, ଗ୍ରା- ଲୁଲେର, ପୋ- ସାଲିମି, ଜି-ମାଲକାନଗିରି ।**

୧୯୪୨ ମସିହା ଅଗଷ୍ଟ ମାସରେ ମାଥିଲି ଥାନା ଆଗରେ ହୋଇଥିବା ଆନ୍ଦୋଳନ ବେଳେ ସେ ପୋଲିସ ଗୁଳିରେ ଆହତ ହୋଇଥିଲେ । ତାଙ୍କର ତଳ ପେଟରେ ଗୁଳି ବିଦ୍ଧ ହୋଇଥିଲା । ତାଙ୍କୁ ୨୦ ବର୍ଷ ଜେଲ ଦଣ୍ଡାଦେଶ ହୋଇଥିଲେ ହେଁ ୯ ମାସ କାଳ ଜେଲରେ ରହିବା ପରେ ସେଠାରେ ହିଁ ତାଙ୍କର ମୃତ୍ୟୁ ଘଟିଥିଲା ।

☛ **ନିଳକଣ୍ଠ ଦୋରା : ପିତା- ଗୋବିନ୍ଦ ଦୋରା, ଗ୍ରାମ-ସାଉଲିଗୁଡ଼ା, ପୋ-ଭେଜାଗୁଡ଼ା, ଜିଲ୍ଲା-ମାଲକାନଗିରି ।**
ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ଅନେକ ଥର ଗିରଫ ହୋଇଥିଲେ । ଦେଶ ପାଇଁ ୩୦ ଟଙ୍କା ଜୋରିମାନା ସହ ୯ ମାସ କାଳ ଜେଲ ଯାଇଥିଲେ ।

☛ **ନାଥ ବାରିକ ଡମ୍ବ : ଗ୍ରାମ-ଲିକିଟିଗୁଡ଼ା, ପୋ-ସାଲିମି, ଜିଲ୍ଲା-ମାଲକାନଗିରି ।**
ସେ ଜଣେ ଆଦର୍ଶ ଦେଶ ଭକ୍ତ ଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ୮ ମାସ ଜେଲ ଯାଇଥିଲେ ।

☛ **ନିଲାମ ଭୂମିଆ : ପିତା- ଘେନୁଆ ଭୂମିଆ, ଗ୍ରାମ-ତୁଆଗୁଡ଼ା, ପୋ- ସାଲିମ,ଜିଲ୍ଲା-ମାଲକାନଗିରି ।**
ଆଦିବାସୀମାନଙ୍କୁ ଏକତ୍ରିତ କରି ଦେଶ ପାଇଁ ସଂଗ୍ରାମ କରିଥିଲେ । ଏହି ଆଦିବାସୀ ନେତାଙ୍କୁ ଏଥିପାଇଁ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୮ ମାସ ଜେଲ ଯିବାକୁ ପଡ଼ିଥିଲା ।

☛ **ନରସିଙ୍ଗ ଚଲାନ : ପିତା-ବାଲା ଚଲାନ, ଗ୍ରାମ-ବେଙ୍କିନିଗୁଡ଼ା, ପୋ-ସାଲିମ, ଜିଲ୍ଲା-ମାଲକାନଗିରି ।**
୧୯୩୬ ମସିହାରେ ନିଜକୁ ସ୍ୱାଧୀନତା ସଂଗ୍ରାମରେ ସାମିଲ କରିଥିଲେ । ୧୯୩୯ ମସିହାରେ ଦୁଇଥର ସତ୍ୟାଗ୍ରହ କରି ୫୦ ଟଙ୍କା ଜୋରିମାନା ସହ ୮ ମାସ ଜେଲଦଣ୍ଡ ପାଇଥିଲେ । ୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନ ବେଳେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ଗିରିଫ ହୋଇଥିଲେ ହେଁ ୩ ବର୍ଷ ଓ ୮ ମାସ ଜେଲ ଖଟି ଶାରୀରିକ ଦୁର୍ବଳତା ଯୋଗୁଁ ମୃତ୍ୟୁବରଣ କରିଥିଲେ ।

☛ **ନରସିଙ୍ଗ ଦୋରା : ପିତା-ଲଇଖନ ଦୋରା, ଗ୍ରା-କତାମେଟା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
ଏହି ଆଦର୍ଶ ଦେଶ ଭକ୍ତ ଜଣକ ମହାନ ଗାନ୍ଧୀବାଦି ନେତା ଥିଲେ ।

ଅନେକ ଥର ସତ୍ୟାଗ୍ରହ କରି ଜେଲ ଯାଇଥିଲେ । ଦେଶ ପାଇଁ ୩୦ ଟଙ୍କା ଅର୍ଥ ଦଣ୍ଡ ସହ ୧ ବର୍ଷ ସଶ୍ରମ କାରାଦଣ୍ଡ ଭୋଗ କରିଥିଲେ ।

☛ **ନିତ୍ୟାନନ୍ଦ ଘାସି : ପିତା-ଦୁର୍ଲ୍ଲଭ ଘାସି, ଗ୍ରାମ-କୋଡ଼ିଗୁଡ଼ା, ପୋ- ଚେଡ଼େଙ୍ଗା, ଜିଲ୍ଲା-ମାଲକାନଗିରି ।**

ଇଂରେଜ ସରକାର ବିରୁଦ୍ଧରେ ଜନମତ ପ୍ରସ୍ତୁତି କରିଥିବାରୁ ଏବଂ ସତ୍ୟାଗ୍ରହ କରିଥିବା ଅଭିଯୋଗରେ ଅଭିଯୁକ୍ତ ହୋଇ ୪୦ ଟଙ୍କା ଅର୍ଥଦଣ୍ଡ ସହ ୨୦ ବର୍ଷ ଜେଲ ଦଣ୍ଡାଦେଶ ପାଇଥିଲେ । ସମୁଦାୟ ୩ ର୍ଷ ୮ ମାସ ଜେଲ୍‌ରେ ରହିବା ପରେ ଅଭାବ ଓ ଅନଟନ ମଧ୍ୟରେ ମୃତ୍ୟୁବରଣ କରିଥିଲେ ।

☛ **ନକୁଳ ଦୁରୁଆ : ପି- ସନୁ ଦୁରୁଆ, ଗ୍ରା- ରେଙ୍ଗାଓ୍ୱାଡ଼ା, ପୋ- ସାଲିମି,ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରିଥିବାରୁ ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । ଏଥିପାଇଁ ତାଙ୍କୁ ୮ ମାସ କାଳ ଜେଲରେ ରହିବାକୁ ପଡ଼ିଥିଲା ।

☛ **ନରସିଂହ କାନାମାଡ଼ି : ପି- ଆଦ୍ୟା ମାଡ଼ି, ଗ୍ରା- ଦୁସାନାଡ଼ି, ପୋ- ସାଲିମ, ଜି-ମାଲକାନଗିରି ।**

ଲକ୍ଷ୍ମଣ ନାୟକଙ୍କ ଆହ୍ୱାନରେ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ୩୦ ଟଙ୍କା ଜୋରିମାନା ସହ ୮ ମାସ ଜେଲ ଦଣ୍ଡ ଭୋଗ କରିଥିଲେ ।

☛ **ନରସିଂହ ନାୟକ : ପି- ଅର୍ଜୁନ ବାକା, ଗ୍ରା-ଚଲାଣଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**

ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜକୁ ସ୍ୱାଧୀନତା ସଂଗ୍ରାମରେ ସାମିଲ କରିଥିବାରୁ ୩୦ ଟଙ୍କା ଜୋରିମାନା ସହ ୧ ବର୍ଷ କାଳ ଜେଲ ଦଣ୍ଡ ଭୋଗିଥିଲେ । ଘରକୁ ଫେରିବା ପରେ ପରେ ତାଙ୍କର ଦେହାନ୍ତ ହୋଇଥିଲା ।

- **ପଦ୍ମଲାମ ନାୟକ : ପି- ମଙ୍ଗଳା ନାୟକ, ଗ୍ରା- କାଳିଆଗୁଡ଼ା, ପୋ- ଚେଡ଼େଙ୍ଗା, ଜି-ମାଲକାନଗିରି ।**

  ସେ ଲକ୍ଷ୍ମଣ ନାୟକଙ୍କ ଜଣେ ପ୍ରଧାନ ସହଯୋଗୀ ଥିଲେ । ୧୯୪୨ ମସିହା ଅଗଷ୍ଟ ମାସରେ ମାଥିଲି ଥାନା ଆଗରେ ହୋଇଥିବା ସତ୍ୟାଗ୍ରହ ବେଳେ ଭୀଷଣ ଲାଠିମାଡ଼ ଖାଇଥିଲେ । ପୋଲିସ ଦ୍ୱାରା ଗିରଫ ହୋଇ ୬୫ ଟଙ୍କା ଜୋରିମାନା ସହ ୨୦ ବର୍ଷ ପାଇଁ କାରାବରଣ କରିବାକୁ ଦଣ୍ଡାଦେଶ ପାଇଥିଲେ । ସେ ୩ ବର୍ଷ ୮ ମାସ ଜେଲରେ ରହି ଖଲାସ ହେବା ପରେ ପୂର୍ବ ଅଘାତ-ଜନିତ ଯନ୍ତ୍ରଣାରେ ପଡ଼ି ଇହଧାମ ତ୍ୟାଗ କରିଥିଲେ ।

- **ବାଗନା ପୂଜାରୀ : ପି- ଡମ୍ବୁ ପୂଜାରୀ, ଗ୍ରା- ସାନଗୁମା, ପୋ - ସାଲିମି, ଜି- ମାଲକାନଗିରି ।**

  ସେ ଜଣେ ଗାନ୍ଧୀବାଦି ନେତା ଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବାରୁ ତାଙ୍କୁ ୫୦ ଟଙ୍କା ଜୋରିମାନା ସହ ୯ ମାସ ଜେଲ ଦଣ୍ଡ ହୋଇଥିଲା ।

- **ବୁଦ୍ରା ଚାଲାଣ : ପି- ସନୁ ଚାଲାଣ, ଗ୍ରା- କର୍ତନ ପଲ୍ଲୀ, ପୋ- ସାଲିମି, ଜି- ମାଲକାନଗିରି ।**

  ଭାରତ ଛାଡ଼ ଆନ୍ଦୋଳନ ବେଳେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୮ ମାସ ସଜା ଖଟି ଖଲାସ ହେବା ପରେ ନିଜ ଗ୍ରାମରେ ତାଙ୍କର ମୃତ୍ୟୁ ହୋଇଥିଲା ।

- **ବଳରାମ ଭୂମିଆ : ପି- ଚକ୍ରୁ ଭୂମିଆ, ଗ୍ରା-ଭଇଷାଘାଟ, ପୋ- ସାଲିମି, ଜି-ମାଲକାନଗିରି ।**

  ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ସତ୍ୟାଗ୍ରହରେ ଭାଗନେଇଥିବାରୁ ୩୦ ଟଙ୍କା ଜୋରିମାନା ସହ ୮ ମାସ କାଳ ସଜା ଖଟି ଥିଲେ ।

- **ବାଗନା ମାଡ଼କାମି : ପି- ନରସିଂହ ମଡ଼କାମି, ଗ୍ରା -ନୂଆଗୁଡ଼ା ପୋ-ସାଲିମି, ଜି-ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନ ବେଳେ ଗିରିଫ ହୋଇ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୧ ବର୍ଷ କାଳ ଜେଲ ଦଣ୍ଡ ଭୋଗିଥିଲେ । ଜେଲରୁ ଖଲାସ ହେବା ପରେ ପରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା ।

☛ **ବଳରାମ ଭୂମିଆ : ପି- ଶ୍ୟାମ ଭୂମିଆ, ଗ୍ରା-ଟେମୁରୁପଲ୍ଲୀ, ପୋ- ସାଲିମି, ଜି- ମାଲକାନଗିରି ।**

ସେ ମହାତ୍ମା ଗାନ୍ଧୀଙ୍କ ଜଣେ ପ୍ରଧାନ ଭକ୍ତ ଥିଲେ । ଗାଁ ଗାଁ ବୁଲି ଆଦିବାସୀମାନଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେବା ପାଇଁ ପ୍ରବର୍ତ୍ତାଉ ଥିଲେ । ୧୯୪୨ ମସିହାରେ ହୋଇଥିବା ସତ୍ୟାଗ୍ରହ ବେଳେ ଗିରିଫ ହୋଇ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ପାଇଥିଲେ । ଏହି ଦଣ୍ଡ ଭୋଗୁଥିବା ସମୟରେ ହିଁ ଜେଲରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା ।

☛ **ବୁଦୁ ଦୁରୁଆ : ପି- ଗାଗୁରୁ ଦୁରୁଆ, ଗ୍ରା- ମହୁପଦର, ପୋ - ସାଲିମ,ଜି-ମାଲକାନଗିରି ।**

ସେ ଜଣେ ଆଦର୍ଶ ଦେଶ ଭକ୍ତ ଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ୯ ମାସ ପାଇଁ ଜେଲ ଯାଇଥିଲେ ।

☛ **ବୁଦ୍ରା ଦୁରୁଆ : ପି- ଭାଦୁ ଦୁରୁଆ, ଗ୍ରା- ମହୁପଦର, ପୋ- ସାଲିମି, ଜି-ମାଲକାନଗିରି ।**

ନିଜର ସମସ୍ତ ସ୍ୱାର୍ଥକୁ ତ୍ୟାଗ କରି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରିଥିଲେ । ଏଥିପାଇଁ ତାଙ୍କୁ ୮ ମାସ ଜେଲରେ ରହିବାକୁ ପଡ଼ିଥିଲା ।

☛ **ବୁଦ୍ରା ଭୂସଡ଼ି : ପି- ସମରା ଭୂସଡ଼ି, ଗ୍ରା- ସାରଙ୍ଗପଲ୍ଲୀ, ପୋ- ମାଥିଲି, ଜି- ମାଲକାନଗିରି । ଏବଂ**

**ବାଗା ନାୟକ : ପି : ମଙ୍ଗଳା ନାୟକ,ଗ୍ରା: କତା ପଲ୍ଲୀ, ପୋ-ସାଲିମ, ଜି- ମାଲକାନଗିରି ।**

ଉଭୟେ ୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନରେ ଯୋଗ

ଦେଇଥିବାରୁ ପୋଲିସ ଦ୍ୱାରା ଗିରିଫ ହୋଇ ୮ ମାସ କାଳ ଜେଲ ଦଣ୍ଡ ପାଇଥିଲେ ।

**ବଳରାମ ପୂଜାରୀ : ପି- ହରି ପୂଜାରୀ, ଗ୍ରା- ପଡ଼ିଆରାସ, ପୋ- ସାଲିମି, ଜି-ମାଲକାନଗିରି ।**
ସେ ଠକର ଆଶ୍ରମର ଜଣେ ଆଦର୍ଶ ସଭ୍ୟ ଭାବେ ଆଦିବାସୀମାନଙ୍କର ସେବା କରୁଥିଲେ । ୧ ୯ ୪ ୨ ମସିହା ଭାରତଛାଡ଼ ଆନ୍ଦୋଳନରେ ବହୁବାର ସତ୍ୟାଗ୍ରହ କରି ଗିରିଫ ହୋଇଥିଲେ । ଏଥିପାଇଁ ତାଙ୍କୁ ୨ ୦ ବର୍ଷ ପାଇଁ କାରା ଦଣ୍ଡାଦେଶ ମିଳିଥିଲା । ପରେ ମାତ୍ର ୩ ବର୍ଷ ୮ ମାସ ଜେଲ ଦଣ୍ଡ ଭୋଗି ଛାଡ଼ ପାଇଥିଲେ । ଅଗଷ୍ଟ ୨ ୧ ମାଥିଲି ଥାନା ଘେରାଉ କରିଥିବା ଘଟଣାରେ ଲକ୍ଷ୍ମଣ ନାୟକଙ୍କ ପରେ ଏହାଙ୍କର ନାମ ଦ୍ୱିତୀୟରେ ଥିଲା ।

**ବନସିଂହ ଗଟେ : ପି- ମଙ୍ଗଳା ଗଟେ, ଗ୍ରା-ମୁକାଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
ନିଜକୁ ସ୍ୱାଧୀନତା ସଂଗ୍ରାମରେ ସାମିଲ କରିଥିବାରୁ ପୋଲିସ ତାଙ୍କୁ ବାନ୍ଧି ନେଇଥିଲା । ଏଥିପାଇଁ ସେ ୨ ୦ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ କାଳ ଜେଲଦଣ୍ଡ ଭୋଗିଥିଲେ ।

**ବାଗାନା ସିଅ : ପି-ମୁକୁନ୍ଦ ସିଅ, ଗ୍ରା- ପାଖନାଗୁଡ଼ା, ପୋ- ଭେଜାଗୁଡ଼ା, ଜି- ମାଲକାନଗିରି ।**
୧ ୯ ୪ ୨ ମସିହାରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ସେ ୨ ୦ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ କାରାବରଣ କରି ଖଲାସ ହେବା ପରେ ମୃତ୍ୟୁବରଣ କରିଥିଲେ ।

**ବୁଟିସନ୍ୟା କାଲାକୁରା : ପି- ମୁକୁନ୍ଦ କାଲାକୁରା, ଗ୍ରା- ପାଖନାଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରି ସତ୍ୟାଗ୍ରହ କରୁଥିବା

ବେଳେ ପୋଲିସ ହାତରେ ଧରାପଡ଼ିଥିଲେ । ଏଥିପାଇଁ ତାଙ୍କୁ ୨୦ ଟଙ୍କା ଅର୍ଥଦଣ୍ଡ ସହ ୯ ମାସ ଜେଲ ଦଣ୍ଡ ହୋଇଥିଲା ।

☛ **ବନ୍ଧୁ ଦୁରୁଆ : ପିତା- ଆଇତା ଦୁରୁଆ, ଗ୍ରାମ- ମହୁପଦର, ପୋ- ସାଲିମି, ଜିଲ୍ଲା- ମାଲକାନଗିରି ।**

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦାନ କରି ଗିରିଫ ହୋଇଥିଲେ । ସେ ୮ ମାସ କାଳ ଜେଲରେ ରହି ଖଲାସ ହେବା ପରେ ମୃତ୍ୟୁବରଣ କରିଥିଲେ ।

☛ **ବନସିଙ୍ଗ ପୂଜାରୀ : ପିତା- ମୁକୁନ୍ଦ ପୂଜାରୀ, ଗ୍ରା- ତେନ୍ତୁଳିଗୁମା, ପୋ-ସାଲିମି, ଜିଲ୍ଲା-ମାଲକାନଗିରି ।**

ଏହି ମହାନ ସ୍ୱାଧୀନତା ସଂଗ୍ରାମୀ ଆଗୁଆ ହୋଇ ବାହାରି ପଡ଼ି ନେତୃତ୍ୱ ନେଇଥିବାରୁ ପୋଲିସ ଗୁଳି ମାଡ଼ରେ ତାଙ୍କର ଗୋଟିଏ ହାତ ନଷ୍ଟ ହୋଇଯାଇଥିଲା । ଅଦାଲତରେ ଦୋଷୀ ସାବ୍ୟସ୍ତ ହୋଇ ୨୦ ବର୍ଷ ଜେଲ ଦଣ୍ଡାଦେଶ ପାଇଥିଲେ । ପରେ ୩ ବର୍ଷ ୮ ମାସ କାଳ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

☛ **ବୁଡୁ କମାର : ପି- ନରସିଂହ କମାର, ଗ୍ରା- ଉଦୟଗିରି, ପୋ- ସାଲିମି, ଜି-ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନ ବେଳେ ଆଦିବାସୀମାନଙ୍କର ନେତୃତ୍ୱ ନେଇଥିବାରୁ ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ଏଥିପାଇଁ ତାଙ୍କୁ ୪୫ଟଙ୍କା ଅର୍ଥଦଣ୍ଡ ସହ ୨୦ ବର୍ଷ ପାଇଁ କାରାଦଣ୍ଡ ଆଦେଶ ହୋଇଥିଲା । ସେ ମାତ୍ର ୩ ବର୍ଷ ଓ ୯ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

☛ **ବନସିଂହ ପୂଜାରୀ : ପି- ଡମ୍ବୁ ପୂଜାରୀ, ଗ୍ରା-ଲୁଲେର, ପୋ- ସାଲିମି, ଜି-ମାଲକାନଗିରି ।**

ସେ ଜଣେ ଆଦର୍ଶ ଗାନ୍ଧୀବାଦି ନେତା ଥିଲେ । ସତ୍ୟାଗ୍ରହ ବେଳେ ଭୀଷଣ ଲାଠିମାଡ଼ ଖାଇବା ସହ ଗିରିଫ ହୋଇ ୧୦ ଟଙ୍କା ଅର୍ଥଦଣ୍ଡ ଓ ୬ ମାସ ପାଇଁ କାରାଦଣ୍ଡାଦେଶ ପାଇଥିଲେ ।

- **ବୁଦ୍ରା କଟିଆ: ପି-ବୁଟି କଟିଆ, ଗ୍ରା-ସାରଙ୍ଗପଲ୍ଲୀ, ପୋ-ମାଥିଲି,ଜି-ମାଲକାନଗିରି ।**
  ସେ ନିଜ ଅଞ୍ଚଳରେ ଆଦିବାସୀମାନଙ୍କୁ ଏକତ୍ରିତ କରି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ନିଜ ଘରେ ଥିବା ୩ ମୁଣ୍ଡ ବଳଦକୁ ବିକ୍ରି କରି ପ୍ରାପ୍ତ ଅର୍ଥକୁ ୧୦୦ ଟଙ୍କା ଅର୍ଥ ଦଣ୍ଡ ବାବଦକୁ ଦେଇ ୧୦ ମାସ ଜେଲରେ ରହିଥିଲେ ।

- **ବନସିଂହ ଚଲାଣ : ପି- ଧନ ଚଲାଣ, ଗ୍ରା- ସାରଙ୍ଗପଲ୍ଲୀ, ପୋ-ମାଥିଲି, ଜି-ମାଲକାନଗିରି ।**
  ସେ ଜଣେ ଆଦର୍ଶ ଗାନ୍ଧୀବାଦି ନେତା ଥିଲେ । ଭାରତଛାଡ଼ ଆନ୍ଦୋଳନ ବେଳେ ଅନେକ ଥର ସତ୍ୟାଗ୍ରହ କରି ୧୦ ମାସ ଜେଲରେ ରହିଥିଲେ । ଏହା ବ୍ୟତୀତ ନିଜର ଦୁଇଟି ବଳଦକୁ ବିକ୍ରି କରି ଅର୍ଥ ଦଣ୍ଡ ବାବଦକୁ ୧୦୦ ଟଙ୍କା ପଇଠ କରିଥିଲେ ।

- **ବନସିଂହ ପୂଜାରୀ : ପି- ମୁକୁନ୍ଦ ପୂଜାରୀ, ଗ୍ରା-ନେତାଇଗନ୍ଧୀ, ପୋ-ଗୋବିନ୍ଦପଲ୍ଲୀ, ଜି-ମାଲକାନଗିରି ।**
  ସେ ଜଣେ ବିଶିଷ୍ଟ ଆଦିବାସୀ ନେତା ଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରିଥିବାରୁ ଦେଶ ପାଇଁ ୯ ମାସ କାରାବରଣ କରିଥିଲେ । ସେ ଘରକୁ ଫେରିବା ପରେ ପରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା ।

- **ଭେଙ୍କେଟ୍ ସ୍ୱାମୀ ପଟ୍ଟନାୟକ : ପି- ସୁବାନା ପଟ୍ଟନାୟକ, ଗ୍ରା-ମାଲକାନଗିରି, ପୋ/ଜି- ମାଲକାନଗିରି ।**
  ୧୯୩୯ ମସିହାରେ ସତ୍ୟାଗ୍ରହ ବେଳେ ୧ ମାସ ୧୫ ଦିନ କାଳ ଜେଲ ଯାଇଥିଲେ । ପରେ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ୧ ବର୍ଷ ୩ ମାସ କାଳ ଜେଲ୍ ଦଣ୍ଡ ଭୋଗିଥିଲେ ।

- **ଭାଲୁ ବାରିକ : ପିତା- ମଙ୍ଗଳା ବାରିକ, ଗ୍ରାମ-ତେତୁଳିଗୁମା, ପୋ- ସାଲିମି, ଜିଲ୍ଲା - ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ବ୍ରିଟିଶ କୋପ ଦୃଷ୍ଟିର ସମ୍ମୁଖୀନ ହୋଇଥିଲେ । ତାଙ୍କୁ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ହୋଇଥିଲା । ସମୁଦାୟ ୩ ବର୍ଷ ଓ ୮ ମାସ କାଳ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

**ଭିକା ବୈରାଗୀ : ପିତା- ଭାଦୁ ବୈରାଗୀ, ଗ୍ରାମ- ଟେମୁରୁପାଲ୍ଲୀ, ପୋ-ସାଲିମି, ଜି-ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନରେ ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ତାଙ୍କ ଦେହରେ ଗୁଳି ମାଡ଼ ମଧ୍ୟ ହୋଇଥିଲା । ଏହି ବିଶିଷ୍ଟ ସଂଗ୍ରାମୀ ୨୦ ବର୍ଷ ଜେଲ ଦଣ୍ଡାଦେଶ ପାଇଥିଲେ ହେଁ ୩ ବର୍ଷ ୭ମାସ କାଳ ଜେଲ ଖଟି ଖଲାସ ହୋଇଥିଲେ ।

**ଭଗବାନ ଭୂମିଆ : ପି-ସମାରୁ ଭୂମିଆ, ଗ୍ରା- ସାରଙ୍ଗପଲ୍ଲୀ, ପୋ- ସାଲିମି, ଜି-ମାଲକାନଗିରି ।**

ଭାରତ ଛାଡ଼ ଆନ୍ଦୋଳନ ବେଳେ ଲକ୍ଷ୍ମଣ ନାୟକଙ୍କ ଆହ୍ୱାନ କ୍ରମେ ସତ୍ୟାଗ୍ରହରେ ଯୋଗ ଦେଇଥିବାରୁ ତାଙ୍କୁ ୮ ମାସ ଜେଲ ଦଣ୍ଡ ମିଳିଥିଲା ।

**ଭୀମ ନାୟକ : ପିତା- ଦୀନବନ୍ଧୁ ନାୟକ, ଗ୍ରା-କାଳିଆଗୁଡ଼ା, ପୋ-ଚେଡ଼େଙ୍ଗା, ଜି-ମାଲକାନଗିରି ।**

ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ମହାତ୍ମାଗାନ୍ଧୀଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସତ୍ୟାଗ୍ରହ କରିଥିବାରୁ ତାଙ୍କୁ ବ୍ରିଟିଶ ଅଦାଲତ ୨୦ ବର୍ଷ କାରାଦଣ୍ଡ ଓ ୨୫ ଟଙ୍କା ଅର୍ଥ ଦଣ୍ଡାଦେଶ ଦେଇଥିଲେ । ସେ ସର୍ବମୋଟ ୩ ବର୍ଷ ୮ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

**ଭୁଜ ବାକା :ପି- ସୁକୁ ବାକା, ଗ୍ରା- ମୁକାଗୁଡ଼ା, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମର ମହାସ୍ରୋତରେ ନିଜକୁ ସାମିଲ କରିଥିବାରୁ

ସେ ଦେଶ ପାଇଁ ୮ ମାସ କାଳ ଜେଲ୍ ଯାଇଥିଲେ ।

**ମାନସିଙ୍ଗ ନାୟକ: ପି-ରାମସିଙ୍ଗ ନାୟକ, ଗ୍ରା-ସାନଗୁମା, ପୋ-ସାଲିମ, ଜି-ମାଲକାନଗିରି ।**

ସେ ୧୯୩୯ ମସିହା ଓ ୧୯୪୨ ମସିହାରେ ଅନେକ ଥର ସତ୍ୟାଗ୍ରହ କରି ୮ ମାସ ଜେଲ ଯାଇଥିଲେ । ୧୯୪୨ ମସିହାରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ ବେଳେ ନିଜର ଅସୁସ୍ଥତା ଯୋଗୁଁ ଯୋଗ ଦେଇ ପାରି ନଥିଲେ ମଧ ପୋଲିସ ତାଙ୍କୁ ଗିରିଫ କରି ମାଡ଼ ଦେଇଥିଲେ । ଅତ୍ୟଧିକ ଆଘାତ ଯୋଗୁଁ ସେ ଅଧିକ ଅସୁସ୍ଥ ହୋଇ ମୃତ୍ୟୁମୁଖରେ ପଡ଼ିଥିଲେ । ଏହା ବ୍ୟତୀତ ନିଜ ଘରର ବାସନକୁସନ ବିକ୍ରିକରି ୫୦ ଟଙ୍କା ଅର୍ଥ ଦଣ୍ଡ ଦେଇଥିଲେ ।

**ମଗଲା ଭୂମିଆ : ପି- ଗୁରୁ ଭୂମିଆ, ଗ୍ରା-ସାନଗୁମା, ପୋ-ସାଲିମି , ଜି-ମାଲକାନଗିରି ।**

୧୯୩୯ ମସିହାରୁ ଅନେକ ଥର ସତ୍ୟାଗ୍ରହ କରି ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । ଏଥିପାଇଁ ସେ କୋରାପୁଟ ଜେଲରେ ୪ ମାସ କାଳ ଜେଲ ଦଣ୍ଡ ଭୋଗିଥିଲେ ।

**ମାନସିଙ୍ଗ ହରିଜନ : ପି- କମଲୁ ହରିଜନ, ଗ୍ରା-ସାନଗୁମା, ପୋ-ସାଲିମି, ଜି-ମାଲକାନଗିରି ।**

ମାଲକାନଗିରି ଅଞ୍ଚଳରେ ହୋଇଥିବା ସ୍ୱାଧୀନତା ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବାରୁ ସେ ୯ ମାସ ଜେଲ ଯାଇଥିଲେ । ଏହା ବ୍ୟତୀତ ତାଙ୍କର ଏକମାତ୍ର ସମ୍ବଳ ୯ ମୁଣ୍ଡ ଗାଈଗୋରୁଙ୍କୁ ପୋଲିସ ଜବତ କରି ନେଇଥିଲେ ।

**ମଗଲା ଚଲାଣ : ପି- ମାଲୁ ଚଲାଣ, ଗ୍ରା-ଉଦୟଗିରି, ପୋ-ସାଲିମ, ଜି-ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବାରୁ ତାଙ୍କୁ ୬ ମାସ କାଳ ଜେଲରେ ରହିବାକୁ ପଡ଼ିଥିଲା ।

☛ ମଧୁ ଭୂମିଆ : ପି- ଲଚମନ ଭୂମିଆ, ଗ୍ରା-ଉଦୟଗିରି, ପୋ- ସାଲିମି, ଜି-ମାଲକାନଗିରି ।

ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସେନାନୀ ଥିଲେ । ସତ୍ୟାଗ୍ରହରେ ଭାଗ ନେଇଥିବାରୁ ୮ ମାସ କାଳ ଜେଲ ଦଣ୍ଡ ଭୋଗିଥିଲେ । ଜେଲରୁ ଖଲାସ ହେବା ପରେ ପରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା ।

☛ ମୁଲ୍ୟା ହରିଜନ : ପିତା- ଘାସି ହରିଜନ, ଗ୍ରା-ଲୁଲେର, ପୋ- ସାଲିମି, ଜି-ମାଲକାନଗିରି ।

ଦେଶ ପାଇଁ ସେ ୯ ମାସ ଜେଲ ଯାଇଥିଲେ । ଏହା ବ୍ୟତୀତ ଅର୍ଥଦଣ୍ଡ ବାବଦକୁ ୨ ହଳ ବଳଦକୁ ବିକ୍ରି କରି ପଇଠ କରିଥିଲେ ।

☛ ମୁନି ମିଡ଼ିଆମି : ପି- ଟୁକୁଡୁ ମିଡ଼ିଆମି, ଗ୍ରା-ତାଳପଦର, ପୋ- ସାଲିମି, ଜି-ମାଲକାନଗିରି ।

ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏହି ଦେଶ ଭକ୍ତ ଜଣକ ସ୍ୱାଧୀନତା ସଂଗ୍ରାମରେ ପୋଲିସ ଅତ୍ୟାଚାରର ଶିକାର ହୋଇଥିଲେ । ତାଙ୍କୁ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ହୋଇଥିଲା । ସେ କିଛି ଦିନ ପରେ ଜେଲରେ ହିଁ ମୃତ୍ୟୁ ବରଣ କରିଥିଲେ ।

☛ ମଙ୍ଗଳା ମାଡ଼କାମି, ପିତା- ରାମ ପୂଜାରୀ, ଗ୍ରାମ- ସରଗିଗୁଡ଼ା, ପୋ-ସାଲିମି, ଜିଲ୍ଲା- ମାଲକାନଗିରି ।

ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଏହି ଦେଶଭକ୍ତ ଜଣକ ସ୍ୱାଧୀନତା ସଂଗ୍ରାମରେ ପୋଲିସ ଅତ୍ୟାଚାରର ଶିକାର ହୋଇଥିଲେ । ତାଙ୍କୁ ୨୦ ବର୍ଷ ଜେଲ ଦଣ୍ଡାଦେଶ ହୋଇଥିଲା ସେ କିଛି ଦିନ ପରେ ଜେଲରେ ହିଁ ମୃତ୍ୟୁ ବରଣ କରିଥିଲେ ।

☛ ମଙ୍ଗଳା ଭୂମିଆ : ପି- ଗଙ୍ଗା ଭୂମିଆ, ଗ୍ରା- ଭଇଁଷାଘାଟ, ପୋ- ସାଲିମି, ଜି-ମାଲକାନଗିରି ।

ଭାରତ ଛାଡ଼ ଆନ୍ଦୋଳନ ବେଳେ ନିଜକୁ ସ୍ୱାଧୀନତା ସଂଗ୍ରାମ ପାଇଁ ଉତ୍ସର୍ଗ କରିଥିବାରୁ ପୋଲିସ ଦ୍ୱାରା ଗିରଫ ହୋଇ ୩୦ ଟଙ୍କା ଅର୍ଥ ଦଣ୍ଡ ସହ ୧ ବର୍ଷ ୬ମାସ ଜେଲଦଣ୍ଡ ଭୋଗ କରିଥିଲେ ।

☛ **ମାଡ଼କାମି ମୁଡ଼ା : ପି- ମାଡ଼କାମି ବୁଦ୍ରା, ଗ୍ରା-କଡାପଲ୍ଲୀ, ପୋ-ସାଲିମି, ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ୬ ମାସ କାଳ କୋରାପୁଟ ଜେଲରେ ରହିଥିଲେ ।

☛ **ମାନସିଂ ପୁଟିଆ : ପି- ସୁକୁ ପୁଟିଆ, ଗ୍ରା-କାଳିଆଗୁଡ଼ା, ପୋ-ଚେଡ଼େଙ୍ଗା , ଜି- ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଆନ୍ଦୋଳନ କରିଥିବାରୁ ସେ ୮ ମାସ ପାଇଁ ଜେଲ ଯାଇଥିଲେ ।

☛ **ମଙ୍ଗରାଜ ନାୟକ : ପି- ଅର୍ଜୁନ ନାୟକ, ଗ୍ରା-କାଳିଆଗୁଡ଼ା, ପୋ- ଚେଡ଼େଙ୍ଗା, ଜି-ମାଲକାନଗିରି ।**

ଭାରତମାତାକୁ ଇଂରେଜମାନଙ୍କ କବଳରୁ ମୁକ୍ତ କରିବା ପାଇଁ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ପୋଲିସ ଦ୍ୱାରା ଗିରଫ ହୋଇଥିଲେ । ସେ କୋରାପୁଟ ଜେଲରେ ୧୦ ମାସ କାରାଦଣ୍ଡ ଭୋଗିବା ପରେ ସେଠାରେ ହିଁ ମୃତ୍ୟୁବରଣ କରିଥିଲେ ।

☛ **ମୋତିସିଂ ମାଡ଼କାମି : ପି- ଗାଙ୍ଗା ମାଡ଼କାମି, ଗ୍ରା-ତଙ୍ଗଗୁଡ଼ା, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।**

ସେ ଜଣେ ଦକ୍ଷ ସ୍ୱାଧୀନତା ସଂଗ୍ରାମୀ ଥିଲେ । ତାଙ୍କ ଉପରେ କ୍ରୋଧିତ ହୋଇ ଇଂରେଜ ସରକାର ଦ୍ୱିପାନ୍ତରବାସ ଆଦେଶ ଦେଇଥିଲେ । କିନ୍ତୁ, ସେ ୧ ବର୍ଷ କାଳ ଜେଲ ଦଣ୍ଡ ଭୋଗି ଖଲାସ ହୋଇଥିଲେ ।

☛ **ମଙ୍ଗଳା ମାଢ଼ି : ପି- ସୁକ୍ରା ମାଢ଼ି, ଗା- ସାଉଁଲିଗୁଡ଼ା, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ତାଙ୍କୁ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ ଜେଲ ଦଣ୍ଡାଦେଶ ହୋଇଥିଲା ।

☛ **ମଙ୍ଗରାଜ ନାୟକ :ପି- ଲଚମନ ଗଉଡ଼, ଗ୍ରା- ଚମ୍ପାଝରଣା. ପୋ- ଗୋବିନ୍ଦପଲ୍ଲୀ, ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମ ବେଳେ ସେ ଯେଉଁ ନେତୃତ୍ୱ ନେଇଥିଲେ ସେଥିପାଇଁ ବ୍ରିଟିଶ ଅଦାଲତ ତାଙ୍କୁ ୩୦ଟଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ କାରାଦଣ୍ଡାଦେଶ ଦେଇଥିଲେ । ସେ ୩ ବର୍ଷ ୮ ମାସ ଜେଲରେ ରହିବା ପରେ ଖଲାସ ହୋଇଥିଲେ ।

**ମଗଲା କପେ : ପି- ମଧୁ ନାୟକ, ଗ୍ରା- ଗଗଲା, ପୋ- ଭେଜାଗୁଡ଼ା କି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ସତ୍ୟାଗ୍ରହ କରିଥିବାରୁ ପୋଲିସ ତାଙ୍କୁ ଭୀଷଣ ମାଡ଼ ଦେଇଥିଲେ । ଯାହା ଫଳରେ କି ତାଙ୍କର ଦୁଇଟି ଯାକ ଚକ୍ଷୁ ନଷ୍ଟ ହୋଇଯାଇଥିଲା । ତାଙ୍କୁ ଏପରି ଅନ୍ଧ କରାଯିବା ପରେ ୨୦ ଟଙ୍କା ଅର୍ଥଦଣ୍ଡ ସହ ୯ ମାସ ଜେଲ ଦଣ୍ଡ ଦିଆଯାଇଥିଲା । ସେ ଦେଶ ପାଇଁ ଏହି ସବୁ ଦଣ୍ଡକୁ ହସି ହସି ସହି ଯାଇଥିଲେ ।

**ମୁକୁନ୍ଦ ଝଲା : ପି- ସନୁ ଝଲା, ଗ୍ରା- ବୀରଲକ୍ଷ୍ମଣପୁର, ପୋ- ଭେଜାଗୁଡ଼ା, କି-ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ଆନ୍ଦୋଳନ ବେଳେ ନିଜକୁ ସେଥିରେ ଉତ୍ସର୍ଗ କରି ବହୁବାର ସତ୍ୟାଗ୍ରହ କରିଥିଲେ । ଏଥିପାଇଁ ତାଙ୍କୁ ବ୍ରିଟିଶ ଅଦାଲତ ୭୦ ଟଙ୍କା ଅର୍ଥ ଦଣ୍ଡ ସହ ୩ ବର୍ଷ ୮ ମାସ କାଳ ଜେଲ ଦଣ୍ଡ ଦେଇଥିଲେ ।

**ଯଦୁ ପୁଟିଆ : ପି-ଗୁରୁ ପୁଟିଆ, ଗ୍ରା-କାଳିଆଗୁଡ଼ା, ପୋ- ବେଡ଼େଙ୍ଗା, କି- ମାଲକାନଗିରି ।**

ସେ ଜଣେ ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ ଥିଲେ । ମାଲକାନଗିରି ଅଞ୍ଚଳରେ ଗୋରା ସରକାର ବିରୁଦ୍ଧରେ ସତ୍ୟାଗ୍ରହ କରି ବହୁବାର ଜେଲ ଯାଇଥିଲେ । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ୯ ମାସ କାଳ ଜେଲ ଖଟି ଘରକୁ ଫେରିବା ପରେ ପରେ ମୃତ୍ୟୁବରଣ କରିଥିଲେ ।

**ରଘୁ ଭୂମିଆ : ପି- ବୁଧୁ ଭୂମିଆ, ଗ୍ରା- ଲାକାଗୁଡ଼ା, ପୋ- ସାଲିମି, କି- ମାଲକାନଗିରି ।**

ସେ ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ ଥିଲେ । ମାଥିଲି ଥାନା ଆଗରେ ସତ୍ୟଗ୍ରହ କରି ୮ ମାସ କାଳ ଜେଲ ଯାଇଥିଲେ ।

☛ **ରଘୁ ପୂଜାରୀ : ପି- ମାନସିଂ ପୂଜାରୀ , ଗ୍ରା-ସାରଙ୍ଗପଲ୍ଲୀ, ପୋ-ମାଥିଲି, ଜି- ମାଲକାନଗିରି ।**

ତାଙ୍କର ସ୍ୱାଧୀନତା ସଂଗ୍ରାମରେ ଇଂରେଜ ସରକାର ବିଚଳିତ ହୋଇ ପଡ଼ିଥିଲେ । ଏଥିପାଇଁ ତାଙ୍କୁ ୧୦୦ ଟଙ୍କା ଅର୍ଥଦଣ୍ଡ ସହ ୧୦ ମାସ କାରାବରଣ କରିବାକୁ ପଡ଼ିଥିଲା ।

☛ **ରାମଚନ୍ଦ୍ର ଭୂମିଆ : ପି-ଲଛମନ ଭୂମିଆ, ଗ୍ରା-ନୂଆଗୁଡ଼ା, ପୋ-ସାଲିମି, ଜି- ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମ ବେଳେ ଆନ୍ଦୋଳନରେ ଭାଗ ନେଇ ୮ ମାସ ପାଇଁ ଜେଲ ଯାଇଥିଲେ ।

☛ **ରାମଧର ଓଡ଼ି : ପି-ସନୁ ଓଡ଼ି, ଗ୍ରା- କୋଟେ଼ପଲ୍ଲୀ, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଲକ୍ଷ୍ମଣ ନାୟକଙ୍କ ଆହ୍ୱାନ କ୍ରମେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । ଏଥିପାଇଁ ତାଙ୍କୁ ୩୦ ଟଙ୍କା ଅର୍ଥଦଣ୍ଡ ସହ ୧ ବର୍ଷ ଜେଲଦଣ୍ଡ ମିଳିଥିଲା ।

☛ **ରଘୁ ଭୂମିଆ : ପି- ଜିନୁ ଭୂମିଆ, ଗ୍ରା- ଲୁଲେର, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଭୂମିଆ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଭୂମିଆ ସଂପ୍ରଦାୟର ଆଦିବାସୀମାନଙ୍କୁ ଏକତ୍ରିତ କରି ଇଂରେଜ ସରକାର ବିରୁଦ୍ଧରେ ଲଢ଼ିଥିବାରୁ ତାଙ୍କୁ ୨୦ ବର୍ଷ ୮ ମାସ ଜେଲଦଣ୍ଡାଦେଶ ହୋଇଥିଲା । ମାତ୍ର ସେ ୩ ବର୍ଷ ୮ ମାସ ପରେ ଛାଡ଼ ପାଇଥିଲେ ।

☛ **ରାମଧର ଭୂମିଆ : ପି- ବୁଦ୍ରା ଭୂମିଆ, ଗ୍ରା- ସରଗିଗୁଡ଼ା, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଜଣେ ଆଦର୍ଶ ଗାନ୍ଧୀବାଦି ଆଦିବାସୀ ନେତା ଥିଲେ । ସ୍ୱାଧୀନତା

ସଂଗ୍ରାମରେ ଯୋଗ ଦେବାରୁ ତାଙ୍କୁ ୬ ମାସ କାଳ ଜେଲଦଣ୍ଡ ମିଳିଥିଲା

☛ **ରାମଚନ୍ଦ୍ର ଭୂମିଆ : ପି- ଆନ୍ଧା ଭୂମିଆ, ଗ୍ରା- ସରଗିଗୁଡ଼ା, ପୋ- ସାଲିମି, ଜି-ମାଲକାନଗିରି ।**
ସ୍ୱାଧୀନତା ଆନ୍ଦୋଳନ ବେଳେ ନିଜର ଦକ୍ଷତା ପ୍ରଦର୍ଶନ କରିଥିବାରୁ ଇଂରେଜ ସରକାର ତାଙ୍କୁ ୯ ମାସ ପାଇଁ ଜେଲ ପଠାଇଥିଲେ ।

☛ **ରଘୁରାମ ବାକା : ପି- ଆଡୁକୁ ବାକା, ଗ୍ରା-ମୁକାଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମର 'ସତ୍ୟାଗ୍ରହରେ ଯୋଗ ଦେଇ ୨୦ ଟଙ୍କା ଅର୍ଥଦଣ୍ଡ ଦେବା ସହ ୯ ମାସ ପାଇଁ ଜେଲ ଯାଇଥିଲେ ।

☛ **ରାମଚନ୍ଦ୍ର ବଟେ : ପି- ସନ୍ୟାସୀ ବଟେ, ଗ୍ରା- ସାଉଁଳୀଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
ଖଦଡ଼ ଲୁଗା ପରିଧାନ କରୁଥିବା ଏହି ସ୍ୱାଧୀନତା ସଂଗ୍ରାମୀ ବ୍ରିଟିଶ ଅଦାଲତରେ ଦଣ୍ଡିତ ହୋଇ ୨୦ ଟଙ୍କା ଜୋରିମାନା ଦେବା ସହ ୯ ମାସ ଜେଲ ଦଣ୍ଡ ଭୋଗିଥିଲେ ।

☛ **ରାମା କପେ : ପି- ଲାଛମା କପେ, ଗ୍ରା- ବନ୍ଧୁଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ଦେଶ ପାଇଁ ୬ ମାସ ଜେଲ ଯାଇଥିଲେ ।

☛ **ରାମାୟା ଡମ : ପି- କାନ୍ଦରା ଡମ, ଗ୍ରା- ଗଙ୍ଗଲା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
୧୯୪୨ ମସିହା ଅଗଷ୍ଟ ମାସରେ ସତ୍ୟାଗ୍ରହ କରିଥିବାରୁ ୨୦ ଟଙ୍କା ଅର୍ଥଦଣ୍ଡ ସହ ୧ ବର୍ଷ ଜେଲ ଯାଇଥିଲେ ।

☛ **ରାମଚନ୍ଦ୍ର କଟିଆ : ପି- ଅର୍ଜୁନ କଟିଆ, ଗ୍ରାମ- ଅଟାଳଗୁଡ଼ା, ପୋ- ମାଥିଲି, ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମ ବେଳେ ପୋଲିସ ଲାଠିରେ ଗୁରୁତର ଭାବେ ଆହତ ହୋଇଥିଲେ । ତାଙ୍କର ସମସ୍ତ ସମ୍ପତ୍ତି ୫୦ ଟଙ୍କାରେ ନିଲାମ କରାଯାଇଥିଲା । ସେ ୧୦ ମାସ ଜେଲରେ ରହି ରୋଗଗ୍ରସ୍ତ ହୋଇ ପଡ଼ିଥିଲେ । ମୁମୂର୍ଷୁ ଅବସ୍ଥାରେ ତାଙ୍କୁ ଖଲାସ କରି ଦିଆଯାଇଥିଲେ ହେଁ ଫେରିବା ବାଟରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା ।

- **ରାମଚନ୍ଦ୍ର କପେ : ପି- ଗୁରୁ କପେ, ଗ୍ରା- ଗଙ୍ଗଲା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
  ସେ ଜଣେ ମହାନ ସ୍ୱାଧୀନତା ସେନାନୀ ଥିଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ ଜେଲ ଯାଇଥିଲେ ।

- **ରାମଚନ୍ଦ୍ର ଭୂମିଆ : ପି- ଟୁକୁଡୁ ଭୂମିଆ, ଗ୍ରା-ପିତାତଙ୍ଗ, ପୋ- ପଦ୍ମଗିରି, ଜି-ମାଲକାନଗିରି ।**
  ସେ ଦେଶ ପାଇଁ ଅନେକ ଥର ଲାଠି ମାଡ଼ ଖାଇବା ସହ ଆନ୍ଦୋଳନ କରିଥିବାରୁ ୮ ମାସ କାଳ ଜେଲ ଯାଇଥିଲେ ।

- **ସନୁ ହରିଜନ : ପି- ରାମଚନ୍ଦ୍ର ହରିଜନ, ଗ୍ରା-ତେନ୍ତୁଲିଗୁମା, ପୋ- ସାଲିମି, ଜି-ମାଲକାନଗିରି ।**
  ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ସ୍ୱାଧୀନତା ସଂଗ୍ରାମ ବେଳେ ପୋଲିସ ତାଙ୍କୁ ବନ୍ଦୀ କରିଥିଲା । ଏଥିପାଇଁ ୧୫ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ କାଳ ଜେଲ ଦଣ୍ଡ ପାଇଥିଲେ ।

- **ସମାରୁ ନାୟକ : ପି- ବୁଲୁ ନାୟକ, ଗ୍ରା- ସାନଗୁମା, ପୋ- ସାଲିମ, ଜି- ମାଲକାନଗିରି ।**
  ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ଏହି ଅପରାଧରେ ବ୍ରିଟିଶ ଅଦାଲତ ତାଙ୍କୁ ୨୦ ବର୍ଷ କାରାଦଣ୍ଡାଦେଶ ଦେଇଥିଲେ । ସେ ମାତ୍ର ୯ ମାସ ଏହି ଦଣ୍ଡ ଭୋଗ କରି ଜେଲ୍‌ରେ ହିଁ ମୃତ୍ୟୁବରଣ କରିଥିଲେ ।

☛ **ସୋମନାଥ ଭୂମିଆ : ପି- ଜଗନ୍ନାଥ ଭୂମିଆ, ଗ୍ରା କର୍ତ୍ତନପଲ୍ଲୀ, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ ଥିଲେ । ଲକ୍ଷ୍ମଣ ନାୟକଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ସତ୍ୟାଗ୍ରହ ବେଳେ ତାଙ୍କୁ ଗିରଫ କରାଯାଇଥିଲା ଓ ଏଥିପାଇଁ ୨୦ ବର୍ଷ ଜେଲ ଦଣ୍ଡାଦେଶ ପାଇଥିଲେ । ଏହି ଦଣ୍ଡ ଭୋଗୁଥିବା ବେଳେ ୩ ବର୍ଷ ୮ ମାସ ପରେ ଖଲାସ ହୋଇଥିଲେ । ଘରକୁ ଫେରିବା ପରେ ପରେ ତାଙ୍କର ମୃତ୍ୟୁ ହୋଇଥିଲା । ।

☛ **ସନିଆ ଭୂମିଆ : ପି- ହରିଜ ରାମ, ଗ୍ରା-ଉଦୟଗିରି, ପୋ-ସାଲିମି,ଜି-ମାଲକାନଗିରି ।**

୧୯୪୨ ମସିହାରେ ଅନୁଷ୍ଠିତ ହୋଇଥିବା ଭାରତ ଛାଡ଼ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରି ୯ ମାସ କାଳ ଜେଲ ଯାଇଥିଲେ ।

☛ **ସନା ପୂଜାରୀ : ପି- ସମାରୁ ପୂଜାରୀ, ଗ୍ରା- ଉଦୟଗିରି, ପୋ- ସାଲିମି, ଜି-ମାଲକାନଗିରି ।**

ମହାତ୍ମାଗାନ୍ଧୀଙ୍କର ଡାକରାରେ ଉଦବୁଦ୍ଧ ହୋଇ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଏଥିପାଇଁ ତାଙ୍କୁ ୮ ମାସ ଜେଲ ଯିବାକୁ ପଡ଼ିଥିଲା ।

☛ **ସମାରୁ ଡୁରୁଆ : ପି- ଲାକମା ଡୁରୁଆ, ଗ୍ରା- ରିଙ୍ଗାୱାଡ଼ା, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଇଂରେଜମାନଙ୍କ ବିରୁଦ୍ଧରେ ବହୁବାର ସତ୍ୟାଗ୍ରହ କରିଥିଲେ । ଏଥିପାଇଁ ତାଙ୍କୁ ୨୦ ବର୍ଷ ଜେଲ ଦଣ୍ଡାଦେଶ ହୋଇଥିଲେ ହେଁ ୯ ମାସ ପରେ ସେ ଖଲାସ ହୋଇଥିଲେ ।

☛ **ସୋମା ଡୁରୁଆ : ପି- କେନି ଡୁରୁଆ, ଗ୍ରା- ରେଙ୍ଗାୱାଡ଼ା, ପୋ-ସାଲିମି, ଜି-ମାଲକାନଗିରି ।**

ଦେଶ ପାଇଁ ସଂଗ୍ରାମ କରି ସେ ଆଠ ମାସ ଜେଲ ଯାଇଥିଲେ ।

☛ **ସୁକମନ ଦୁରୁଆ : ପି- ଲାକମା ଦୁରୁଆ, ଗ୍ରା- ବେଦୁରୁ ପାଲ୍ଲୀ, ପୋ-ସାଲିମି, ଜି- ମାଲକାନଗିରି ।**

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ୮ ମାସ ଜେଲ ଯାଇଥିଲେ ।

☛ **ସମ୍ବାରୁ ପୂଜାରୀ : ପି- ସୁନାଧର ପୂଜାରୀ, ଗ୍ରା- ବାକିଲିଗୁଡ଼ା, ପୋ- ସାଲିମି, ଜି-ମାଲକାନଗିରି ।**

ଇଂରେଜମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରୁଥିବା ବେଳେ ପୋଲିସ ତାଙ୍କୁ ଗିରିଫ କରିଥିଲେ । ଏହି ଅପରାଧ ପାଇଁ ତାଙ୍କୁ ୧ ବର୍ଷ ଓ ୨ ମାସ ଜେଲ ଦଣ୍ଡ ଭୋଗିବା ସହ ୪୫ ଟଙ୍କା ଅର୍ଥଦଣ୍ଡ ଦେବାକୁ ପଡ଼ିଥିଲା ।

☛ **ସମା ଦୁରୁଆ : ପି- ଲାକମା ଦୁରୁଆ, ଗ୍ରା- ରେଙ୍ଗାୱାଡ଼ା, ପୋ- ସାଲିମି, ଜି-ମାଲକାନଗିରି ।**

ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ କୋରାପୁଟ ଜେଲରେ ୮ ମାସ କାରାଦଣ୍ଡ ଭୋଗ କରିଥିଲେ ।

☛ **ସମ୍ବାରୁ ଦୁରୁଆ : ପି- ମଙ୍ଗୁଡୁ ଦୁରୁଆ, ଗ୍ରା-ବେଦୁରୁପାଲ୍ଲୀ, ପୋ- ସାଲିମି, ଜି- ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମ ବେଳେ ପୋଲିସ ଦ୍ୱାରା ଗିରିଫ ହୋଇ ୮ ମାସ ଜେଲ ଯାଇଥିଲେ ।

☛ **ସମରା ଭୂମିଆ : ପି- ବୁଦ୍ରା ଭୂମିଆ, ଗ୍ରା ମଝାରଗୁଡ଼ା, ପୋ- ଚେଡ଼େଙ୍ଗା, ଜି- ମାଲକାନଗିରି ।**

ସେ ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ ଥିଲେ । ଆଦିବାସୀ କୁଳରେ ଜନ୍ମ ହୋଇ ସେ ଯେଉଁ ବିପ୍ଳବ କରିଥିଲେ ତାହା ଅନ୍ୟତ୍ର ବିରଳ । ଇଂରେଜ ସରକାର ତାଙ୍କୁ ୩୦ ଟଙ୍କା ଅର୍ଥଦଣ୍ଡ ସହ ୨୦ ବର୍ଷ ଜେଲ ଦଣ୍ଡାଦେଶ ଦେଇଥିଲେ ହେଁ ସେ ୩ ବର୍ଷ ଓ ୮ ମାସ ଜେଲ ଖଟି ଖଲାସ ହୋଇଥିଲେ ।

- **ସୁକୁରା କାଣ୍ଡିକି : ପିତା- ବାଗା କାଣ୍ଡିକି, ଗ୍ରାମ- କଟାପାଲ୍ଲୀ, ପୋ- ସାଲିମି, ଜିଲ୍ଲା-ମାଲକାନଗିରି ।**

  ମାଥିଲି ସତ୍ୟାଗ୍ରହ ବେଳେ ପୋଲିସ ଲାଠି ଦ୍ୱାରା ଜଖମ ହୋଇ ଗିରିଫ ହୋଇଥିଲେ । ସେ ଦେଶ ପାଇଁ ୧୦ ଟଙ୍କା ଅର୍ଥ ଦଣ୍ଡ ସହ ୮ ମାସ ଜେଲ୍ ଯାଇଥିଲେ ।

- **ସନା ମାଡ଼କାମି: ପି- ରାମଚନ୍ଦ୍ର ମାଡ଼କାମି, ଗ୍ରା- କୋଡ଼ିଗୁଡ଼ା, ପୋ- ଚେଡ୍ରେଙ୍ଗା, ଜି- ମାଲକାନଗିରି ।**

  ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ସେ ୧ ବର୍ଷ ୩ ମାସ କାଳ ଜେଲ ଯାଇଥିଲେ ଏବଂ ୫୦ ଟଙ୍କା ଜୋରିମାନା ଦେବାକୁ ପଡ଼ିଥିଲା।

- **ସୁନାଧର ଦୁରା : ପି- ରାମ ଦୁରା, ଗ୍ରା- କୋଡ଼ିଗୁଡ଼ା, ପୋ- ଚେଡ୍ରେଙ୍ଗା, ଜି-ମାଇକାନଗିରି ।**

  ସତ୍ୟାଗ୍ରହ କରି ପୋଲିସ ଲାଠି ମାଡ଼ରେ ଆହତ ହୋଇଥିଲେ । ଏହି ଆଘାତ ଜନିତ ଯନ୍ତ୍ରଣାରେ ଛଟପଟ୍ ହୋଇ ଜେଲ ଦଣ୍ଡ ଭୋଗୁଥିବା ବେଳେ ଜେଲରେ ହିଁ ମୃତ୍ୟୁ ବରଣ କରିଥିଲେ । ଏହା ବ୍ୟତୀତ ତାଙ୍କୁ ନିଜ ଘରର ସାମାନ ପତ୍ର ବିକ୍ରି କରି ୫୦ ଟଙ୍କା ଅର୍ଥ ଦଣ୍ଡ ପଇଠ କରିବାକୁ ପଡ଼ିଥିଲା ।

- **ଏସ୍. ଗୁରୁଲିଙ୍ଗମ୍ : ପି- ଏସ୍. ଚେଲମାୟା, ଗ୍ରା-ମାଥିଲି, ପୋ- ମାଥିଲି, ଜି- ମାଇକାନଗିରି ।**

  ୧୯୪୨ ମସିହା ଅଗଷ୍ଟ ମାସରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ପୋଲିସ ଲାଠିରେ ଆହତ ହୋଇଥିଲେ । ତାଙ୍କୁ ୫୦ ଟଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ ଜେଲ ଦଣ୍ଡାଦେଶ ମିଳିଥିଲା । ସେ ୩ ବର୍ଷ ୮ ମାସ ଜେଲରେ ରହି ଖଲାସ ହୋଇଥିଲେ ।

- **ସମରା ନାୟକ : ପି- ଅର୍ଜୁନ କଟିଆ,ଗ୍ରା- ଅଟାଳଗୁଡ଼ା, ପୋ- ମାଥିଲି, ଜି-ମାଇକାନଗିରି ।**

  ସେ ଜଣେ ଶ୍ରେଷ୍ଠ ଆଦିବାସୀ ନେତା ଥିଲେ । ଆଦିବାସୀ ସମାଜରେ

ତାଙ୍କର ବହୁତ ଖାତିରି ଥିଲା । ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । ତାଙ୍କର ଅପରାଧକୁ ଗୁରୁତର ମନେ କରି ୧୨୦ଟଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ ଜେଲ ଦଣ୍ଡାଦେଶ ଦିଆଯାଇଥିଲା । ସେ ୩ ବର୍ଷ ୮ ମାସ ଜେଲ ଖଟି ଖଲାସ ହେବା ପରେ ମୃତ୍ୟୁ ବରଣ କରିଥିଲେ ।

- **ସନିଆ କଟିଆ : ପି- କୁସନ କଟିଆ, ଗ୍ରା-ଅଟାଳଗୁଡ଼ା, ପୋ-ମାଥିଲି, ଜି- ମାଲକାନଗିରି ।**
  ଭାରତ ମାତାକୁ ଇଂରେଜ କବଳରୁ ମୁକ୍ତ କରିବା ପାଇଁ ସେ ସଂଗ୍ରାମ କରିଥିଲେ । ଏଥି ପାଇଁ ତାଙ୍କୁ ୯ ମାସ କାରାବରଣ କରିବାକୁ ହୋଇଥିଲା ।

- **ସନ୍ନ୍ୟାସୀ ବାକା : ପି- ସନାଧର ବାକା, ଗ୍ରା- ନାୟକଗୁଡ଼ା, ପୋ- ଭେଜାଗୁଡ଼ା,ଜି-ମାଲକାନଗିରି ।**
  ଗୋରା ସରକାର ବିରୁଦ୍ଧରେ ଲଢ଼ିଥିବାରୁ ତାଙ୍କୁ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ ଜେଲଦଣ୍ଡ ଭୋଗ କରିବାକୁ ପଡ଼ିଥିଲା ।

- **ସୁକ୍ରା ଗଟେ : ପି- ମଙ୍ଗଳା ଗଟେ, ଗ୍ରା- ମୁକାଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।**
  ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ପୋଲିସ ମାଡ଼ରେ ଜଖମ ହୋଇଥିଲେ । ସେ ୯ ମାସ ଜେଲଦଣ୍ଡ ଭୋଗ କରି ଆଘାତ ଜନିତ ଯନ୍ତ୍ରଣାରେ ସେଠାରେ ହିଁ ମୃତ୍ୟୁବରଣ କରିଥିଲେ ।

- **ସନୁ ଭୂମିଆ : ପି- ଲାକମା ଭୂମିଆ, ଗ୍ରା- ଟାଳପଦର, ପୋ- ସାଲିମି, ଜି- ମାଲକାନଗିରି ।**
  ୧୯୪୨ ମସିହା ଅଗଷ୍ଟ ମାସରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରୁଥିବା ବେଳେ ପୋଲିସ ଗୁଳିରେ ଆହତ ହୋଇଥିଲେ । ଏହି ଅପରାଧରେ ସେ ୮ ମାସ ପାଇଁ ଜେଲ ଯାଇଥିଲେ ।

☛ ସନା ପୂଜାରୀ : ପି- ରଘୁ ପୂଜାରୀ, ଭଇଁଷା ଘାଟ, ପୋ- ସାଲିମି, ଜି- ମାଲକାନଗିରି ।
ସେ ଦେଶ ପାଇଁ ଆନ୍ଦୋଳନ କରି କୋରାପୁଟ ଜେଲରେ ୬ ମାସ ଜେଲଦଣ୍ଡ ଭୋଗ କରିଥିଲେ ।

☛ ସମ୍ଭାରୁ ନାୟକ : ପି- ଉର୍ମା ନାୟକ, ଗ୍ରା- ତୁଆଗୁଡ଼ା, ପୋ- ସାଲିମି, ଜି- ମାଲକାନଗିରି ।
୧୯୪୨ ମସିହା ଅଗଷ୍ଟ ମାସରେ ହୋଇଥିବା ମାଥିଲି ଗୁଳିକାଣ୍ଡରେ ସେ ଆହତ ହୋଇଥିଲେ । ଏଥିରେ ତାଙ୍କର ଗୋଟିଏ ଗୋଡ଼ ନଷ୍ଟ ହୋଇଯାଇଥିଲା । ତାଙ୍କର ଅପରାଧକୁ ଗୁରୁତର ମନେ କରି ବ୍ରିଟିଶ ଅଦାଲତ ତାଙ୍କୁ ୩୦ ଟଙ୍କା ଜୋରିମାନା ସହ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ଦେଇଥିଲେ । ୩ ବର୍ଷ ୮ ମାସ ପରେ ତାଙ୍କୁ ଛାଡ଼ି ଦିଆଯାଇଥିଲା ।

☛ ସନ୍ୟାସୀ ଭୂମିଆ : ପି- ଗଙ୍ଗା ଭୂମିଆ, ଗ୍ରା-ବାରୁବେଡ଼ା, ପୋ- ସାଲିମି, ଜି-ମାଲକାନଗିରି ।
ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ମାଥିଲି ଗୁଳିକାଣ୍ଡ ବେଳେ ପୋଲିସ ଗୁଳିରେ ଆହାତ ହୋଇଥିଲେ । ଇଂରେଜ ଅଦାଲତ ତାଙ୍କୁ ୪୦ ଟଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ଦେଇଥିଲେ । ପରେ ସେ ୩ ବର୍ଷ ୮ ମାସ ଜେଲ ଖଟି ଖଲାସ ହୋଇଥିଲେ ।

☛ ସନୁ ପୂଜାରୀ : ପି- ବୁଦ୍ରା ପୂଜାରୀ, ଗ୍ରା-ସରଗୀଗୁଡ଼ା, ପୋ- ସାଲିମି, ଜି-ମାଲକାନଗିରି ।
ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଦେଶ ପାଇଁ ୯ ମାସ ଜେଲ ଯାଇଥିଲେ ।

☛ ସବୁ ମାଡ଼କାମି : ପି- ବୁଦ୍ରା ମାଡ଼କାମି, ଗ୍ରା- ସରଗୀଗୁଡ଼ା, ପୋ- ସାଲିମି, ଜି- ମାଲକାନଗିରି ।

ସତ୍ୟାଗ୍ରହ କରୁଥିବା ବେଳେ ପୋଲିସ ତାଙ୍କୁ ଗିରିଫ କରି ଜେଲ ପଠାଇ ଦେଇଥିଲେ । ତାଙ୍କ ଶରୀର ହଠାତ ଅସୁସ୍ଥ ହୋଇପଡ଼ିବାରୁ ୮ ମାସ ଜେଲ ଦଣ୍ଡ ପରେ ଛାଡ଼ ପାଇଥିଲେ । ମାତ୍ର ଘରକୁ ଫେରିବା ପରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା ।

☛ **ସନୁ ବାରିକ : ପି- ଜୟରାମ ବାରିକ, ଗ୍ରା - ଲୁଲେର, ପୋ-ସାଲିମି, ଜି-ମାଲକାନଗିରି ।**

ସେ ଜଣେ ବିପ୍ଳବୀ ଥିଲେ । ଇଂରେଜମାନଙ୍କୁ ଏ ଦେଶରୁ ହଟାଇବା ପାଇଁ ବିପ୍ଳବ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିବାରୁ ୨୦ ଟଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ ଜେଲ ଦଣ୍ଡାଦେଶ ପାଇଥିଲେ । ପରେ ୩ ବର୍ଷ ୯ ମାସ ଜେଲ ଖଟି ଖଲାସ ହୋଇଥିଲେ ।

☛ **ସନିଆ ଭୂମିଆ : ପି- ପାଣ୍ଡୁ ଭୂମିଆ, ଗ୍ରା- ଲୁଲେର, ପୋ-ସାଲିମି, ଜି-ମାଲକାନଗିରି ।**

ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇଥିବାରୁ ଦେଶପାଇଁ ୯ ମାସ ଜେଲ ଯାଇଥିଲେ ।

☛ **ସୁକ୍ରା ନାୟକ : ପି- ରାମଚନ୍ଦ୍ର ନାୟକ, ଗ୍ରା- କଟେଲାଗୁଡ଼ା, ପୋ-ମାଥିଲି, ଜି-ମାଲକାନଗିରି ।**

୧୯୪୨ ମସିହା ଅଗଷ୍ଟ ମାସରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରିଥିବାରୁ ପୋଲିସ ତାଙ୍କୁ ଗିରିଫ କରିଥିଲେ । ଏହି ଅପରାଧରେ ଦଣ୍ଡିତ ହୋଇ ୩ ମୁଣ୍ଡ ବଳଦ ୨୦ ପୁଟି ଧାନ ଓ ୨୦୦ ଟଙ୍କା ଅର୍ଥ ଦଣ୍ଡ ସହ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ପାଇଥିଲେ । ତାଙ୍କୁ ମାତ୍ର ୩ ବର୍ଷ ୮ ମାସ ପରେ ଜେଲରୁ ମୁକ୍ତ କରିଦିଆଯାଇଥିଲା ।

☛ **ସୁକ୍ରା ଚଲାଣ : ପି- ଗଙ୍ଗାଧର ଚଲାଣ, ଗ୍ରା-ସାରଙ୍ଗପଲ୍ଲୀ, ପୋ-ମାଥିଲି, ଜି-ମାଲକାନଗିରି ।**

୧୯୪୨ ମସିହାରେ ଅନୁଷ୍ଠିତ ହୋଇଥିବା ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରିଥିବାରୁ ପୋଲିସ ତାଙ୍କୁ ବନ୍ଦୀ କରିଥିଲେ ।

ଏଥିପାଇଁ ଗୋଟିଏ ବଳଦ ବିକ୍ରି କରି ଅର୍ଥଦଣ୍ଡ ବାବଦରେ ପଇଠ କରିବା ସହ ୧୪ ମାସ କାଳ ଜେଲରେ ରହିଥିଲେ ।

☛ **ସମରା କଟିଆ : ପି-ରଘୁ କଟିଆ, ଗ୍ରା-କଟଲାଗୁଡ଼ା, ପୋ-ମାଥିଲି, ଜି-ମାଲକାନଗିରି ।**
ସ୍ୱାଧୀନତା ସଂଗ୍ରାମ ବେଳେ ମାଲକାନଗିରି ଅଞ୍ଚଳରେ ବହୁବାର ସତ୍ୟାଗ୍ରହ କରିଥିଲେ । ଏଥିପାଇଁ ତାଙ୍କୁ ଜେଲ ପଠାଇ ଦିଆଯାଇଥିଲା । ସେଠାରେ ୧୦ ମାସ ସଜା ଭୋଗିବା ପରେ ଘରକୁ ଫେରି ମୃତ୍ୟୁବରଣ କରିଥିଲେ ।

☛ **ସିଙ୍ଗ କଟିଆ : ପି- ମଙ୍ଗଳା କଟିଆ, ଗ୍ରା- କଟଲାଗୁଡ଼ା, ପୋ-ମାଥିଲି, ଜି-ମାଲକାନଗିରି ।**
ଦେଶ ସ୍ୱାଧୀନତା ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ଆନ୍ଦୋଳନରେ ଭାଗ ନେଇଥିବାରୁ ତାଙ୍କୁ ଜେଲ ଦଣ୍ଡ ମିଳିଥିଲା । ୮ ମାସ ଜେଲରେ ରହିବା ପରେ ସେଠାରେ ତାଙ୍କର ମୃତ୍ୟୁ ଘଟିଥିଲା ।

☛ **ସମ୍ୱାରୁ ଗଉଡ଼ : ପି- ଭାଲୁ ଗଉଡ଼, ଗ୍ରା-ଭଣ୍ଡାରି ପାଙ୍ଗାମ, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।**
ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ଦେଶ ପାଇଁ ୯ ମାସ ଜେଲ ଯାଇଥିଲେ ।

☛ **ସନ୍ନ୍ୟାସୀ କପେ : ପି- ବୁଦ୍ରା କପେ, ଗ୍ରା-ଗଙ୍ଗଲା, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।**
ଇଂରେଜ ସରକାର ବିରୁଦ୍ଧରେ ସତ୍ୟାଗ୍ରହ କରି ପୋଲିସ ଲାଠିମାଡ଼ରେ ଆହତ ହେବା ସହ ଗିରଫ ହୋଇଥିଲେ । ସେ ୬ ମାସ ଜେଲରେ ରହିବା ପରେ ଘରକୁ ଫେରି ମୃତ୍ୟୁ ବରଣ କରିଥିଲେ ।

☛ **ସମ୍ୱାରୁ ନାୟକ : ପି- ବାଗା ପୂଜାରୀ, ଗ୍ରା- ପିତାତଙ୍ଗ,ପୋ-ପଦ୍ମଗିରି, ଜି- ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମ ବେଳେ ପୋଲିସ ଦ୍ୱାରା ବନ୍ଦୀ ହୋଇ ଜେଲ ଯାଇଥିଲେ । ଜେଲରେ ମାତ୍ର ୯ ମାସ ସଜା ଖଟି ସେଠାରେ ହିଁ ମୃତ୍ୟୁବରଣ କରିଥିଲେ ।

☛ **ଶିବରାତ ଭୂମିଆ : ଗ୍ରା-ସିନ୍ଧିଗୁଡ଼ା, ପୋ-ମାଥିଲି, ଜି-ମାଲକାନଗିରି ।**

ସେ ୧୯୩୯ ମସିହା ଓ ୧୯୪୨ ମସିହାରେ ଅନେକ ଥର ସତ୍ୟାଗ୍ରହ କରି ଜେଲ ଯାଇଥିଲେ । ତାଙ୍କୁ ବ୍ରିଟିଶ ଅଦାଲତ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ଦେଇଥିଲେ ହେଁ ସେ ୩ ବର୍ଷ ୮ ମାସ ଜେଲରେ ରହି ଖଲାସ ହୋଇଥିଲେ ।

☛ **ହାତୀରାମ ଚଣ୍ଡାଳ : ପିତା- ଭିକାରୀ ଚଣ୍ଡାଳ, ଗ୍ରାମ-ଆମ୍ବପଡ଼ା, ପୋ-ମାଥିଲି, ଜିଲ୍ଲା-ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମ ବେଳେ ନିର୍ଭୀକ ଭାବରେ ଦେଶ ପାଇଁ ଲଢ଼ିଥିଲେ । ଇଂରେଜ ସରକାର କ୍ରୋଧିତ ହୋଇ ତାଙ୍କୁ ୨୦ ବର୍ଷ ପାଇଁ ଜେଲ ଦଣ୍ଡାଦେଶ ଦେଇଥିଲେ । ସେ ମୋଟ ୩ ବର୍ଷ ୮ ମାସ କାଳ ଜେଲରେ ରହି ଘରକୁ ଫେରିଥିଲେ ।

☛ **ହରି ପୂଜାରୀ : ପି- ଜୟରାମ ପୂଜାରୀ, ଗ୍ରା-ବାକିଲିଗୁଡ଼ା, ପୋ-ସାଲିମି, ଜି- ମାଲକାନଗିରି ।**

ସତ୍ୟାଗ୍ରହ କରୁଥିବା ବେଳେ ପୋଲିସ ଲାଠିରେ ଗୁରୁତର ଭାବେ ଆହତ ହୋଇଥିଲେ । ୧ ବର୍ଷ କାଳ କାରାବାସ ପରେ ଘରକୁ ଫେରି ମୃତ୍ୟୁ ବରଣ କରିଥିଲେ ।

☛ **ହାତୀରାମ ନାୟକ : ପି- ଗୋବିନ୍ଦ ନାୟକ, ଗ୍ରା- କାଳିଆଗୁଡ଼ା, ପୋ- ଚେଡ଼େଙ୍ଗା, ଜି-ମାଲକାନଗିରି ।**

ସେ ଜଣେ ମହାନ ସ୍ୱାଧୀନତା ସେନାନୀ ଥିଲେ । ଇଂରେଜମାନଙ୍କ କବଳରୁ ଭାରତମାତାକୁ ମୁକ୍ତ କରିବା ପାଇଁ ସତ୍ୟାଗ୍ରହ କରି ଏକ ବର୍ଷ ଜେଲ ଯାଇଥିଲେ ।

☛ **ହରି ପୂଜାରୀ :** ପି- ସମ୍ୱାରୁ ପୂଜାରୀ, ଗ୍ରା-ଅଟାଳଗୁଡ଼ା, ପୋ-ମାଥିଲି, ଜି- ମାଲକାନଗିରି ।
ଲକ୍ଷ୍ମଣ ନାୟକଙ୍କ ଡାକରାରେ ନିଜ ଅଞ୍ଚଳର ସମସ୍ତ ଆଦିବାସୀଙ୍କୁ ଏକତ୍ରିତ କରି ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରିଥିବା ହେତୁ ଇଂରେଜ ସରକାର ତାଙ୍କୁ ୫୦ ଟଙ୍କା ଜୋରିମାନା ସହ ୨୦ ବର୍ଷ କାରାଦଣ୍ଡାଦେଶ ଦେଇଥିଲେ । ସେ ୩ ବର୍ଷ ୮ ମାସ ସଜା ଖଟି ଘରକୁ ଫେରିଥିଲେ ।

☛ **ହାତୀରାମ କଟିଆ :** ପି-ମଙ୍ଗରା କଟିଆ, ଗ୍ରା-ଅଟାଳଗୁଡ଼ା, ପୋ- ମାଥିଲି, ଜି-ମାଲକାନଗିରି ।
ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ସତ୍ୟାଗ୍ରହ କରିଥିବା ଅଭିଯୋଗରେ ଗିରିଫ୍ ହୋଇଥିଲେ । ଏଥିପାଇଁ ତାଙ୍କୁ ୨୦ ବର୍ଷ ଜେଲ ଦଣ୍ଡାଦେଶ ମିଳିଥିଲା । ସେ ୩ ବର୍ଷ ୮ ମାସ ଜେଲରେ ରହିବା ପରେ ମୁକ୍ତି ପାଇଥିଲେ ।

☛ **ହାତୀରାମ ଭଣ୍ଡାରୀ :**ପି-ରାମସିଂ ଭଣ୍ଡାରୀ, ଗ୍ରା-ବାୟାନାୟକଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।
୧୯୪୨ ମସିହା ଅଗଷ୍ଟ ମାସରେ ହୋଇଥିବା ସତ୍ୟାଗ୍ରହ ବେଳେ ଗିରିଫ ହୋଇ ୩୦ ଟଙ୍କା ଜୋରିମାନା ସହ ୧ ବର୍ଷ ଜେଲ ଯାଇଥିଲେ ।

☛ **ହରିସିଙ୍ଗ ଝିମିଲି :** ପି- ସମ୍ୱାରୁ ଝିମିଲି, ଗ୍ରା-ଗାଟୁଗୁଡ଼ା, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।
ମହାତ୍ମା ଗାନ୍ଧୀଙ୍କର ଆଦର୍ଶରେ ଅନୁପ୍ରେରିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ପୋଲିସ ଦ୍ୱାରା ଗିରିଫ ହୋଇ ଜେଲ ଯାଇଥିଲେ । ୯ ମାସ ଜେଲ ଦଣ୍ଡ ଭୋଗିବା ପରେ ସେଠାରେ ହିଁ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

☛ **ହରି କାଲାକୋରା :** ପି- ଲଇକନ କାଲାକୋରା, ଗ୍ରା-ଡୁମାଗୁଡ଼ା, ପୋ-ଭେଜାଗୁଡ଼ା, ଜି-ମାଲକାନଗିରି ।

ଏହି ମହାନ ସ୍ୱାଧୀନତା ସଂଗ୍ରାମୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରି ଗିରିଫ ହୋଇଥିଲେ । ତାଙ୍କୁ ୨୦ ଟଙ୍କା ଅର୍ଥଦଣ୍ଡ ସହ ୯ ମାସ ଜେଲ ଯିବାକୁ ପଡ଼ିଥିଲା ।

☛ **ଲଉଖନ ବାକା : ପିତା- ବାସୁ ବାକା, ଗ୍ରାମ- ନାୟକଗୁଡ଼ା, ପୋ- ଭୈଜାଗୁଡ଼ା, ଜିଲ୍ଲା-ମାଲକାନଗିରି ।**

ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରି ୨୦ ଟଙ୍କା ଅର୍ଥଦଣ୍ଡ ସହ ୯ ମାସ ଜେଲ ଯାଇ ଥିଲେ ।

☛ **ଲଉକନ ଭୂମିଆ : ପି- ଗୁରୁ ଭୂମିଆ, ଗ୍ରା-ସାନଗୁମା, ପୋ- ସାଲିମି,ଜି-ମାଲକାନଗିରି ।**

୧୯୩୯ ମସିହାରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଗିରିଫ ହୋଇଥିଲେ । ୪ ମାସ ଜେଲ ଦଣ୍ଡ ଭୋଗ କରି ପୂର୍ବ ଆଘାତ ଜନିତ ଯନ୍ତ୍ରଣାରେ ଛଟପଟ ହୋଇ ଘରକୁ ଫେରୁଥିବା ବେଳେ ବାଟରେ ମୃତ୍ୟୁ ବରଣ କରିଥିଲେ ।

☛ **ଲଉଚନ ଭୂମିଆ : ପି- କୋଡ଼ି ଭୂମିଆ, ଗ୍ରା: ସାନଗୁମା, ପୋ- ସାଲିମି, ଜି-ମାଲକାନଗିରି ।**

୧୯୪୨ ମସିହା ସ୍ୱାଧୀନତା ସଂଗ୍ରାମ ବେଳେ ପୋଲିସ ଦ୍ୱାରା ଲାଠି ମାଡ଼ରେ ଆହତ ହୋଇଥିଲେ । ସେ ୧୫ ଟଙ୍କା ଅର୍ଥ ଦଣ୍ଡ ସହ ୯ ମାସ ଜେଲ ଖଟିଥିଲେ ।

☛ **ଲକ୍ଷ୍ମଣ ସମରଥ : ପି- ନରସିଂହ ସମରଥ, ଗ୍ରା- ସାରଙ୍ଗପାଲ୍ଲୀ, ପୋ-ମାଥିଲି, ଜି-ମାଲକାନଗିରି ।**

ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରୁଥିବା ବେଳେ ପୋଲିସ ତାଙ୍କୁ ଗିରଫ୍ କରି ନେଇଥିଲେ । ଇଂରେଜ ସରକାର ତାଙ୍କୁ ୨୦ ବର୍ଷ କାରାଦଣ୍ଡାଦେଶ ଦେଇଥିଲେ । ପରେ ୩ ବର୍ଷ ୯ ମାସ ଜେଲରେ ରହି ଘରକୁ ଫେରିବା ପରେ ମୃତ୍ୟୁ ବରଣ କରିଥିଲେ ।

☛ ଲଇକନ ଦୁରୁଆ : ପି- ସାରା ଦୁରୁଆ, ଗ୍ରା-ମଦୁ ପଦର, ପୋ- ମାଥିଲି, ଜି-ମାଲକାନଗିରି ।
ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ଦେଶ ପାଇଁ ୬ ମାସ କାରାବରଣ କରିଥିଲେ ।

☛ ଲଇକନ ବାକା : ପିତା- ଗୋବିନ୍ଦ ବାକା, ଗ୍ରା-ମୁକାଗୁଡ଼ା, ପୋ- ଭେଜାଗୁଡ଼ା, ଜି-ମାଲକାନଗିରି ।
ସେ ଅନେକ ବାର ସତ୍ୟାଗ୍ରହରେ ଭାଗ ନେଇଥିଲେ । ଏଥିପାଇଁ ୨୦ ଟଙ୍କା ଅର୍ଥଦଣ୍ଡ ସହ ୯ ମାସ ଜେଲଦଣ୍ଡ ଭୋଗ କରିଥିଲେ ।

☛ ଲକ୍ଷ୍ମଣ କାଣ୍ଡିକି : ପି- ଇଙ୍ଗା କାଣ୍ଡିକି, ଗ୍ରା-ପିତାଟଙ୍ଗ, ପୋ- ପଦ୍ମଗିରି, ଜି-ମାଲକାନଗିରି ।
ଲକ୍ଷ୍ମଣ ନାୟକଙ୍କ ଆହ୍ୱାନରେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରି ୧୦୦ ଟଙ୍କା ଅର୍ଥଦଣ୍ଡ ସହ ୪ ମାସ ଜେଲ ଦଣ୍ଡ ଭୋଗ କରିଥିଲେ ।

☛ ଲଚ୍ମନ ଗୌଡ଼ : ପିତା- ବୁଦ୍ରା ଗୌଡ଼, ଗ୍ରାମ- ଭଇଁଶାଘାଟ, ପୋ- ସାଲିମି, ଜି-ମାଲକାନଗିରି ।
ଦେଶ ସ୍ୱାଧୀନତା ପାଇଁ ନିଜର ସବୁ କିଛି ଉତ୍ସର୍ଗ କରି ପୋଲିସ ଦ୍ୱାରା ଗିରିଫ ହୋଇଥିଲେ । କିଛି ଅର୍ଥ ଦଣ୍ଡ ସହ ୬ ମାସ କୋରାପୁଟ ଜେଲରେ ଜେଲ ଦଣ୍ଡ ଭୋଗ କରିଥିଲେ । ❖❖❖

**ମାଥିଲି ଗୁଳିକାଣ୍ଡ ବେଳେ ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ସତ୍ୟାଗ୍ରହ କରୁଥିବା ଅବସ୍ଥାରେ ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲେ ସେମାନେ ହେଲେ-**

୧ ॥ ନକୁଳ ପୂଜାରୀ : ପିତା-ସନା ପୂଜାରୀ, ଗ୍ରା-ଦାରୁବେଢ଼ା, ପୋ- ସାଲିମି, ଜି- ମାଲକାନଗିରି ।

୨ ॥ ସମରା ନାୟକ : ପିତା- ମାଲୁ ନାୟକ, ଗ୍ରା-ମଝାରଗୁଡ଼ା, ପୋ- ଚେଢ଼େଙ୍ଗା, ଜି-ମାଲକାନଗିରି ।

୩ ॥ ନରସିଂହ ଭୂମିଆ : ପିତା- ବୁଦୁ ଭୂମିଆ, ଗ୍ରା-କୋଡ଼ିଗୁଡ଼ା, ପୋ- ଚେଢ଼େଙ୍ଗା, ଜି-ମାଲକାନଗିରି ।

୪ ॥ ଲିଙ୍ଗା ଭୂମିଆ : ପିତା- ସମାରୁ ଭୂମିଆ, ଗ୍ରା- ଟିମସପୁଟ, ପୋ- ମାଥିଲି, ଜି- ମାଲକାନଗିରି ।

ଏହି ମହାନ ସଂଗ୍ରାମୀମାନେ ନିଜ ଜୀବନର ମୋହମାୟାକୁ ଜଳାଞ୍ଜଳି ଦେଇ ୧୯୪୨ ମସିହା ଅଗଷ୍ଟ ୨୧ ତାରିଖରେ ଭାରତ ଛାଡ଼ ଆନ୍ଦୋଳନ ବେଳେ ମାଥିଲି ଥାନା ଆଗରେ ସତ୍ୟାଗ୍ରହ କରୁଥିବା ସମୟରେ ପୋଲିସ ଗୁଳିରେ ମୃତ୍ୟୁବରଣ କରିଥିଲେ । ଏହି ମହାନ୍ ଆତ୍ମାଙ୍କ ମଧ୍ୟରେ ଲିଙ୍ଗା କଟିଆ(ଭୂମିଆ) ଓ ନକୁଳ ମାଡ଼କାମି ଯୁବକ ଦ୍ୱୟ ମାଥିଲି ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବାକୁ ଯାଇ ଥାନା ବଡ଼ବାବୁ ଜଗା ନାୟକଙ୍କ ଗୁଳି ମାଡ଼ରେ ଜଣକ ପରେ ଜଣେ ଟଳି ପଡ଼ିଥିଲେ । ସମରା ନାୟକ ଓ ନରସିଂହ ଭୂମିଆ ଅନ୍ୟମାନଙ୍କ ସହ ଥାନା ଘେରାଉ କରୁଥିବା ବେଳେ ପୋଲିସର ନିର୍ମମ ବନ୍ଧୁକ ଗୁଳି ସେମାନଙ୍କର ବକ୍ଷ ଭେଦ କରିଥିଲା । ଏମାନଙ୍କର ବୀରତ୍ୱ ତଥା ସାହସିକତା ଅନ୍ୟତ୍ର ବିରଳ । ଏହି ବୀର ପୁରୁଷମାନେ ଦେଶ ପାଇଁ ହସି ହସି ଜୀବନ ଦାନ କରିଥିଲେ ଯାହାକି ଏହି ଶହୀଦ ମାଟି ସର୍ବଦା ମନେ ରଖିଥିବ । ଶହୀଦ୍ ଲିଙ୍ଗା ଭୂମିଆଙ୍କ ଉଦ୍ଦେଶ୍ୟରେ ରଚିତ ନିଜସ୍ୱ କବିତାର କିୟଦଂଶ ନିମ୍ନରେ ପ୍ରଦାନ କଲି –

ଟିମସ୍ ଗୁଡ଼ା(ପୁଟ)ର ଲିଙ୍ଗା ଭୂମିଆ
ଆଦିବାସୀ ସେ ଯେ ଦେହଟି ଲୁହା ।
ମନରେ ସାହସ ହୃଦୟେ ବପୁ
ନ ଥାଏ ତାହାର ଭୟ କାହାକୁ ॥

\+ + +

ବେଗେ ଚଢ଼ିଗଲା ଥାନା ଉପରେ
'ବନ୍ଦେ ମାତରଂ' ଧ୍ୱନୀ ମୁଖରେ ।
ଆଖି ପିଛୁଳାକେ ସବୁ ଘଟିଲା
ଗୁଳି ବାଜି ଲିଙ୍ଗା ତଳେ ପଡ଼ିଲା ॥

(ଶିଶୁ ପ୍ରଭା, ଦ୍ୱିତୀୟ ସଂଖ୍ୟା-୧୯୯୪)



# ଶହୀଦ୍ ଲକ୍ଷ୍ମଣ ନାୟକ

ମାଲକାନଗିରି ଜିଲ୍ଲାର ସୀମାନ୍ତରେ ଥିବା କୋଲାବ ନଦୀ କୂଳରେ ତେନ୍ତୁଲିଗୁମା ଗ୍ରାମ ଅବସ୍ଥିତ । ଲକ୍ଷ୍ମଣ ନାୟକ ଏଠାରେ ୧୮୯୯ ମସିହା ନଭେମ୍ବର ମାସ ୨୨ ତାରିଖରେ ଏକ ଆଦିବାସୀ ଭୂମିଆ ପରିବାରରେ ମାତା ତୁଳସାଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ । ସେ ସମଗ୍ର ମାଲକାନଗିରି ଅଞ୍ଚଳର ଆଦିବାସୀମାନଙ୍କୁ ଏକତ୍ରିତ କରି ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ି ସ୍ୱାଧୀନଭାରତର ସ୍ୱପ୍ନ ଦେଖିଥିଲେ । ବାପା ପଦଲାମ ନାୟକ ସେ ଅଞ୍ଚଳର ମୁସ୍ତାଦାର ବା ମୁଖିଆ ଭାବେ ଜୟପୁର ରାଜାଙ୍କ ଦ୍ୱାରା ନିଯୁକ୍ତି ପାଇଥିଲେ ।

ସେତେବେଳକୁ ଇଂରେଜମାନଙ୍କ ଦୈତ ଶାସନରେ ଅତ୍ୟାଚାରିତ ହେଉଥିଲେ ଏହି ନିରୀହ, ନିଷ୍କପଟ, ସରଳ ଆଦିବାସୀମାନେ । ସେତେବେଳେ ଅତି ଅନ୍ୟାୟ ଭାବେ ଏମାନଙ୍କୁ ବେଠି ଖଟିବାକୁ ପଡୁଥିଲା । ଏମାନଙ୍କୁ ପୋଲିସ, ଆର୍.ଆଇ. ଓ ଫରେଷ୍ଟ ଗାର୍ଡ଼ମାନେ ଶୋଷଣ କରୁଥିଲେ । ଆଦିବାସୀମାନେ ନିରବରେ ଏ ସବୁକୁ ସହି ଯାଉଥିଲେ । ଏ ସବୁ କଥା ଯୁବକ ଲକ୍ଷ୍ମଣ ନାୟକଙ୍କୁ ବିବ୍ରତ କରିଦେଉଥିଲା । ଅନ୍ୟାୟର ପ୍ରତିବାଦ ସ୍ୱରୂପ ସେ ଆରମ୍ଭ କରିଦେଇଥିଲେ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ ।ପିଲାଦିନରୁ ହିଁ ଅନ୍ୟର ସେବା କରିବା ଅଭ୍ୟାସ ତାଙ୍କର ଥିଲା । ଝାଡ଼ଫୁଙ୍କ କରିବା, ଚେରମୂଳି ଦେଇ ରୋଗ ଭଲ କରିବା ତଥା ଆଦିବାସୀ କୁଳର ସମସ୍ତ ଭଲମନ୍ଦ କାର୍ଯ୍ୟରେ ଯୋଗଦାନ କରି ସହଜରେ ସେ ସମସ୍ତଙ୍କ ହୃଦୟକୁ ଜୟ କରିପାରୁଥିଲେ । ଲକ୍ଷ୍ମଣଙ୍କ ଲୋକପ୍ରିୟତା ଯୋଗୁଁ ଶହ ଶହ ଆଦିବାସୀ ତାଙ୍କ କଥା ମାନି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ।

୧୯୨୧ ମସିହାରେ ଆନ୍ଧ୍ରପ୍ରଦେଶର ଆଲ୍ଲୁରୀ ସୀତାରାମରାଜୁ ଚିନ୍ତୁକୋଣ୍ଡା ଅଞ୍ଚଳରେ 'ମାଲକାନଗିରି ଆଦିବାସୀମାନଙ୍କୁ ନେଇ ଇଂରେଜମାନଙ୍କ ବିରୁଦ୍ଧରେ ଗରିଲା ଯୁଦ୍ଧ ଚଳାଇଥିଲେ । ପ୍ରଥମେ ଲକ୍ଷ୍ମଣ ନାୟକ ସୀତା ରାମାରାଜୁଙ୍କ କାର୍ଯ୍ୟକଳାପରେ ପ୍ରଭାବିତ ହୋଇ ପଡ଼ିଥିଲେ । ସାଲିମି ନିକଟରେ ଥିବା ଲୁଲେର ଗ୍ରାମର ଚନ୍ଦ୍ର କୁଟିଆଙ୍କ ଠାରୁ ମଧ୍ୟ ଶସ୍ତ୍ର ଚାଳନା ଓ ଲୁଚି ଛପି କିଭଳି ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ ତାହା ଶିଖିଥିଲେ । ପରେ ସେ ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଅହିଂସା ଉପାୟରେ ସ୍ୱାଧୀନତା ଆନ୍ଦୋଳନ ଚାଲୁ ରଖିଥିଲେ ।

ଇଂରେଜମାନେ ଲକ୍ଷ୍ମଣ ନାୟକଙ୍କ ଉପରେ କ୍ରୋଧିତ ହୋଇ ତାଙ୍କୁ ଫୁଟୁର ଦାର ବା ରାଜଦ୍ରୋହୀ ବୋଲି ଘୋଷଣା କରିଥିଲେ । ତାଙ୍କର ଅନେକ ଜମିବାଡ଼ି ଛଡ଼ାଇ ନେଇଯାଇଥିଲେ ।ଏଥିରୁ ବିରତ ନ ହେଲେ କଠୋର ଦଣ୍ଡରେ ଦଣ୍ଡିତ କରାଯିବ ବୋଲି ଧମକ ଦେଉଥିଲେ । ଏହି ସବୁ ଅତ୍ୟାଚାରକୁ ଲକ୍ଷ୍ମଣ ନାୟକ ସପରିବାରେ ସହ୍ୟ କରିନେଇଥିଲେ । ସ୍ତ୍ରୀ ମଙ୍ଗୁଳି, ପୁଅ ରଘୁ ଓ ଝିଅ କୌଶଲ୍ୟା ମଧ୍ୟ ଏହି ମହତ କାମରେ ସହଯୋଗ କରିଥିଲେ ।

ଜୟପୁରରୁ ଆସି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ରାଧାକୃଷ୍ଣ ବିଶ୍ୱାସରାୟ, କୃଷ୍ଣ ଚନ୍ଦ୍ର ବିଶୋଇ ଓ ରାଧାମୋହନ ସାହୁ ମାଲକାନଗିରି ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ । ଘୁମର ଗ୍ରାମ (ବୈପାରୀଗୁଡ଼ା ବ୍ଲକ)ର ନୀଳକଣ୍ଠ ପାତ୍ର ଲକ୍ଷ୍ମଣ ନାୟକଙ୍କ ପ୍ରଧାନ ସହଯୋଗୀ ଭାବେ ଏହି ଆନ୍ଦୋଳନକୁ ବ୍ୟାପକ କରାଇ ପାରିଥିଲେ । ଏମାନେ ସର୍ବଦା ଆମର ପୂଜ୍ୟ ଓ ନମସ୍ୟ ହୋଇ ରହିବେ ।

୧୯୪୨ ମସିହା ଅଗଷ୍ଟ ମାସ ୨୧ ତାରିଖରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନ କ୍ରମେ ସାରା ଦେଶରେ ଯେଉଁ ସତ୍ୟାଗ୍ରହ ଆନ୍ଦୋଳନ ହୋଇଥିଲା, ସେହି ଦିନ ମାଥିଲି ଥାନା ଆଗରେ ଅଗଣିତ ଆଦିବାସୀଙ୍କୁ ନେଇ ସତ୍ୟାଗ୍ରହ ଆନ୍ଦୋଳନ କରିଥିଲେ ବୀର ଲକ୍ଷ୍ମଣ ନାୟକ । ତାଙ୍କ କଥାରେ ଏଭଳି ଯାଦୁ ଥିଲା ଯେ ସେଇଦିନ ସଂଗ୍ରାମରତ କୌଣସି ଲୋକ ପଛଘୁଞ୍ଚା ଦେଇ ନଥିଲେ । ସେହି ସତ୍ୟାଗ୍ରହ ବେଳେ ମାଥିଲି ଥାନା ଉପରେ ତ୍ରିରଙ୍ଗା ପତାକା

ଉଡ଼ାଇବାକୁ ଯାଇଁ ପୋଲିସ ଗୁଳିରେ ଟଳିପଡ଼ିଥିଲେ ଟିମସଗୁଡ଼ାର ଆଦିବାସୀ ଯୁବକ ଲିଙ୍ଗା ଭୂମିଆ ଓ ପରେ ପରେ ନକୁଳ ମାଡ଼କାମୀ । ସେତେବେଳେ ପୋଲିସ ଗୁଳିରେ କେତେ ଯେ ମୃତାହତ ହେଲେ ତାହା ଆଜିବି ସମସ୍ତଙ୍କୁ ଅଜଣା । ଧସ୍ତାଧସ୍ତି ଭିତରେ ଜି. ରାମାୟା ନାମକ ଜଣେ ଫରେଷ୍ଟ ଗାର୍ଡର ମୃତ୍ୟୁ ହୋଇଥିଲା । ଏଣେ ଲକ୍ଷ୍ମଣ ପୋଲିସ ଲାଠି ଓ ବନ୍ଧୁକ ଗୁବା ଖାଇ ଗୋଟାଏ କୋଣରେ ସଂଜ୍ଞାହୀନ ହୋଇ ପଡ଼ିଥାନ୍ତି ।



(ଶହୀଦ ଲକ୍ଷ୍ମଣ ନାୟକଙ୍କ କନ୍ୟା ଶ୍ରୀମତୀ କୌଶଲ୍ୟା ନାୟକଙ୍କ ସହିତ ଲେଖକ )

ଲକ୍ଷ୍ମଣ ନାୟକ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ,ମାଥିଲି ପାଇଁ କଂଗ୍ରେସର ସଭାପତି ଭାବରେ କାର୍ଯ୍ୟ ତୁଲାଉଥିଲେ । ଏଥିପାଇଁ

ପୋଲିସ ଅନେକ ଦିନରୁ ସୁଯୋଗ ଖୋଜୁଥିଲା ତାଙ୍କୁ ଆରେଷ୍ଟ କରିବା ପାଇଁ । ଫଳରେ ରାମାୟାର ମୃତ୍ୟୁ ଘଟଣା ପୋଲିସକୁ ଏକ ସୁଯୋଗ ଆଣି ଦେଲା ଲକ୍ଷ୍ମଣଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ । ରାମାୟାର ମୃତ୍ୟୁ ପାଇଁ ପୋଲିସ ଲକ୍ଷ୍ମଣଙ୍କୁ ଗିରଫ୍ କରି କୋରାପୁଟ ଜେଲକୁ ନେଇ ଯାଇଥିଲେ । ତାଙ୍କ ସହ ଅନ୍ୟ ୫୩ ଜଣଙ୍କୁ ମଧ୍ୟ ଉକ୍ତ ଦିନର ଘଟଣା ପାଇଁ ହାତକଡ଼ା ପକାଇ କୋର୍ଟକୁ ଚାଲାଣ କରାଯାଇଥିଲା । ବିଚାର ଚାଲିଲା । ଇଂରେଜ ସରକାରଙ୍କ ତରଫରୁ କିଛି ଲୋକଙ୍କୁ ଧରି ଆଣି ମାଥିଲି ଥାନାରେ ମିଥ୍ୟା ସାକ୍ଷ୍ୟ ପାଇଁ ଜବରଦସ୍ତ ତାଲିମ ଦିଆଯାଇଥିଲା । ବିଚାର ଶେଷରେ ସେସନ କେସ୍ ନଂ ୧୮/୧୯୪୨ ତା ୧୩.୧୧.୧୯୪୨ରେ ମାନ୍ୟବର ଜଜ୍ ଭି. ରାମନାଥନ ଅର୍ଡ଼ର ଶୁଣାଇଥିଲେ ଯେ :Accused No (1) Sri Lakhan Naiko is convicted under section 302 I.P.C. and sentenced to death subject to confirmation by the Hon'ble High Court. ଏଥିପାଇଁ ପାଟଣା ହାଇକୋର୍ଟରେ ମଧ୍ୟ ଅପିଲ କରାଯାଇଥିଲା । କିନ୍ତୁ, କିଛି ଫଳ ମିଳିଲା ନାହିଁ । ଉକ୍ତ ଅପିଲ ପାଇଁ ବ୍ରହ୍ମପୁରର ଓକିଲ ରାଧା ଚରଣ ଦାସ ପଦକ୍ଷେପ ନେଇଥିଲେ । ବ୍ରହ୍ମପୁର ଜେଲରେ ବନ୍ଦୀ ଥିବା ବିପ୍ଳବୀ ଉମାଚରଣ ପଟ୍ଟନାୟକ ଏଥିପାଇଁ ସହଯୋଗ ପ୍ରଦାନ କରିଥିଲେ । ଏହି ମହତ କାମ ପାଇଁ ଏ ଦୁହେଁ ସର୍ବଦା ସ୍ମରଣୀୟ ହୋଇ ରହିବେ ।

ବ୍ରହ୍ମପୁର ଜେଲରେ ୧୯୪୩ ମସିହା ମାର୍ଚ୍ଚ ମାସ ୨୯ ତାରିଖ ଭୋର ୫ଟା ସମୟରେ ଲକ୍ଷ୍ମଣଙ୍କୁ ନିଆଯାଇଥିଲା ଫାଶୀଖୁଣ୍ଟ ପାଖକୁ । ସମସ୍ତେ ଦୁଃଖରେ ଭାଙ୍ଗି ପଡୁଥିଲା ବେଳେ ଏଥିପାଇଁ ତାଙ୍କର ଆଦୌ ଦୁଃଖ ନଥିଲା । କେବଳ ଦୁଃଖ ରହିଗଲା ଯେ ସେ ସ୍ୱଚକ୍ଷୁରେ ସ୍ୱାଧୀନ ଭାରତ ଦେଖିପାରି ନଥିଲେ । ଧନ୍ୟ ସେ ଜୀବନ, ଯାହାର ବିନିମୟରେ ଭାରତର ଅଗଣିତ ନରନାରୀ ଇଂରେଜମାନଙ୍କ କବଳରୁ ମାତୃଭୂମିକୁ ମୁକ୍ତକେଇ ପାରିଥିଲେ । ଏହା ହେଉଛି ମାଲ୍ୟବତର ଗୌରବ ଯେ ଏହି ଭଳି ଜଣେ ବୀରପୁରୁଷ ଏଠାରେ ଜନ୍ମ ନେଇଥିଲେ ।

ଇତିହାସରୁ ଜଣାଯାଏ ଯେ ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ

ଆଗୁଆ ହୋଇ ବାହାରନ୍ତି ପୋଲିସ ସେମାନଙ୍କୁ ନିର୍ଯ୍ୟାତନା ଦେଇ କୌଣସି ପ୍ରକାରେ ଦମନ କରିବାକୁ ଚେଷ୍ଟା କରନ୍ତି । ପରିସ୍ଥିତି ଅସମ୍ଭାଳ ହେଲେ ନେତୃ ସ୍ଥାନୀୟ ବ୍ୟକ୍ତିଙ୍କ ଉପରକୁ ବେଳକାଳ ଦେଖି ଛାଣି ଗୁଣି ଗୁଳି ଚାଳନା କରାଯାଇଥାଏ । ଏ କଥା ଲକ୍ଷ୍ମଣଙ୍କ ପ୍ରତି ମଧ ହୋଇଛି । ୧୯୪୨ ମସିହା ଅଗଷ୍ଟ ମାସ ୨୧ ତାରିଖ, ଶୁକ୍ରବାର ଦିନ ସତ୍ୟାଗ୍ରହ ବେଳେ ମାଥିଲି ଥାନା ପ୍ରାଙ୍ଗଣରେ ତାଙ୍କୁ ମାରି ଦେବା ପାଇଁ ତାଙ୍କ ଉପରକୁ ଗୁଳି ଚାଳନା କରାଯାଇଥିଲା । କିନ୍ତୁ, ପ୍ରବଳ ଜନସମାଗମ ଯୋଗୁ ସୌଭାଗ୍ୟବଶତଃ ତାଙ୍କ ଦେହରେ ଗୁଳି ବାଜିଲା ନାହିଁ । ପରେ ଭିଡ଼ ମଧରେ ତାଙ୍କୁ ଖୋଜି ବନ୍ଧୁକର ପଛ ଭାଗ ଦ୍ୱାରା ତାଙ୍କ ମୁହଁ ଓ ବକ୍ଷକୁ ପ୍ରହାର କରାଯାଇଥିଲା । ଅତ୍ୟଧିକ ଆଘାତ ହେତୁ ସେ ସଂଜ୍ଞାହୀନ ହୋଇପଡ଼ିବାରୁ ତାଙ୍କୁ ମୃତ ବୋଲି ଧରି ନେଇ ଗୋଟିଏ କୋଣରେ ଫୋପାଡ଼ି ଦିଆଯାଇଥିଲା । ଏହି ସବୁ କାର୍ଯ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ତତ୍କାଳୀନ ମାଥିଲି ଥାନା ସବ୍‌ଇନିସପେକ୍ଟର ଏମ୍. ଜଗାନୟକଲୁ ।

ପରେ ପରିସ୍ଥିତି ଶାନ୍ତ ହେବାରୁ ସମସ୍ତେ ଯେତେବେଳେ ଜାଣିଲେ ଯେ ଲକ୍ଷ୍ମଣ ମରି ନାହାନ୍ତି, ସେତେବେଳେ ନାନା କୌଶଳ କରି ତାଙ୍କୁ ମଦୁଆ ଫରେଷ୍ଟ ଗାର୍ଡ ରାମାୟାର ମୃତ୍ୟୁ ପାଇଁ ଦାୟୀ କରିଥିଲେ । ଏଣିକି ଖସିବାର ଆଉ ଉପାୟ ନାହିଁ । କାରଣ ଆଇନ ଅନୁସାରେ ତାଙ୍କୁ ଫାଶୀ ହୋଇଗଲେ ଆଉ କେହି ଆନ୍ଦୋଳନ କରିବାକୁ ସାହସ କରିବେ ନାହିଁ । ଅନ୍ୟର ସେବା ଓ ସାହାଯ୍ୟ ପାଇଁ ଯେ ସବୁବେଳେ ବ୍ୟାକୁଳ-ଯିଏ ଅନ୍ୟର ସାମାନ୍ୟ ଆଘାତ ଦେଖି ସହ୍ୟ କରିପାରନ୍ତି ନାହିଁ-ସେହି ସତ୍ୟ ଓ ଅହିଂସାର ପୂଜାରୀ ଲକ୍ଷ୍ମଣ କ'ଣ ହତ୍ୟା ପରି ଏକ ଜଘନ୍ୟ ଅପରାଧ କରି ପାରିବେ ? କିନ୍ତୁ , ଦୁର୍ଭାଗ୍ୟ ଯେ ଇଂରେଜ ଶାସନ ସମୟରେ ଆମ ଭାରତୀୟ ଅଫିସରମାନେ ମଧ ଲକ୍ଷ୍ମଣଙ୍କ ପ୍ରତି ଦୟା ପ୍ରଦର୍ଶନ କରି ଘଟଣାର ସତ୍ୟାସତ୍ୟ ପ୍ରତି ଦୃଷ୍ଟି ଦେଇ ନଥିଲେ । ତାଙ୍କ ସପକ୍ଷରେ କୌଣସି ବ୍ୟକ୍ତି ବା ଓକିଲ କିଛି କହି ନଥିଲେ । ଶେଷରେ ଷଡ଼ଯନ୍ତ୍ରର ଶିକାର ହୋଇ ଲକ୍ଷ୍ମଣ ନାୟକ ଦେଶ ପାଇଁ ଫାଶୀ ପାଇଲେ ।

ଲକ୍ଷ୍ମଣ ନାୟକଙ୍କୁ ବଞ୍ଚାଇବା ପାଇଁ ଆଇନର ବାଟ ପ୍ରଶସ୍ତ ଥିବାବେଳେ ଏଥିପାଇଁ ଅଧିକ ଆବେଦନ କରାଯାଇ ପାରିଥାନ୍ତା । ହୁଏତ ପରବର୍ତ୍ତୀ ଆବେଦନ ପାଇଁ ଲକ୍ଷ୍ମଣ ନାୟକ ଇଚ୍ଛା ପ୍ରକାଶ କରି ନଥିବେ କିମ୍ବା ଅନ୍ୟ କୌଣସି କାରଣରୁ ହେଉ ଏହା ସମ୍ଭବ ହୋଇପାରି ନଥିଲା । ଆଉ ଗୋଟିଏ କଥା ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଯେଉଁ କେତେକ ବ୍ରିଟିଶ କର୍ମଚାରୀ ଲକ୍ଷ୍ମଣ ନାୟକଙ୍କ ଗିରିଫ ଠାରୁ ଆରମ୍ଭ କରି ଫାଶୀ ପର୍ଯ୍ୟନ୍ତ ସଂପୃକ୍ତ ଥିଲେ ସେମାନଙ୍କୁ ପରବର୍ତ୍ତୀ ସ୍ୱାଧୀନ ଭାରତରେ ସରକାରୀ ସୁବିଧା, ଚାକିରୀ କିମ୍ବା ପଦୋନ୍ନତିରୁ ବଞ୍ଚିତ କରାଯାଇ ପାରିନଥିଲା ।

ଲକ୍ଷ୍ମଣ ନାୟକଙ୍କ ସ୍ମୃତି ରେ ରଚିତ ମୋର ଏକ କ୍ଷୁଦ୍ର କବିତା ନିମ୍ନରେ ପ୍ରଦାନ କଲି ।

*ତୁମକୁ ଝୁରୁଛି ମୁହିଁ*<br>
*ଝୁରୁ ଅଛି ମାଲ୍ୟବନ୍ତଗିରି*<br>
*ହେତୁ କରି ତୁମ ବଡ଼ ପଣ*<br>
*ତୁମ କଥା ତୁମ ସ୍ମୃତି ନେଇ*<br>
*କୃତଜ୍ଞ ଏଇ ମାଟି, ତା' ପାଣି ପବନ... ।*

\+ + +

*ମାଥିଲି ସତ୍ୟାଗ୍ରହ କଥା*<br>
*ବ୍ରହ୍ମପୁର ଜେଲ ଘରେ*<br>
*ଫାଶୀ ଖୁଣ୍ଟେ ଚଢ଼ିବା ଆଗରୁ*<br>
*ଯାହା ତୁମେ କହି ଦେଲ ମୁଖେ*<br>
*ବେଶି ଦିନ ଲାଗି ନାହିଁ*<br>
*ଅବ୍ୟର୍ଥ ସେ ସତ୍ୟର ଲହେଇ*<br>
*ସ୍ୱାଧୀନତାର ସ୍ୱାଦ ଦବୁ*<br>
*ସଞ୍ଚି ଦେଇ ଆମ ପାଇଁ*<br>
*ହସି ହସି ଜୀବନକୁ ଦେଇ ... ... ।।*

(୧୯୯୫ରେ ମାଥିଲିରୁ ପ୍ରକାଶିତ<br>
ସ୍ମରଣିକାରେ ପ୍ରକାଶିତ)



# ମାଲକାନଗିରିରେ
# ସନ୍ୟାସୀଙ୍କ ସ୍ୱାଧୀନତା ସଂଗ୍ରାମ

ଦେହରେ ଗେରୁଆ ବସ୍ତ୍ର, ମୁହଁରେ ଦାଢ଼ି, ମୁଣ୍ଡରେ ଲମ୍ୱା ବାଳ, କପାଳରେ ନାଲି ତିଳକ ଓ ଗଳାରେ ରୁଦ୍ରାକ୍ଷ ଧାରଣ କରିଥିବା ଏହି ବ୍ୟକ୍ତି ଜଣକ ହେଉଛନ୍ତି ଜଣେ ସନ୍ୟାସୀ । ସେ ଅନେକ ବିଦ୍ୟା ଓ ଶାସ୍ତ୍ର ଅଧ୍ୟୟନ କରିଥିଲେ । ଭାରତର ବିଭିନ୍ନ ସ୍ଥାନ ପରିଦର୍ଶନ କରି ଏହାର ଐତିହ୍ୟ ଓ ସଂସ୍କୃତି ବିଷୟରେ ବହୁତ କଥା ଜାଣି ପାରିଥିଲେ । ତାଙ୍କର ବ୍ୟବହାର ରୁଚିପୂର୍ଣ୍ଣ ଓ ଚେହେରା ଆକର୍ଷଣୀୟ ଥିଲା । ଜଣେ ତ୍ୟାଗୀ ହୋଇଥିବାରୁ ସଂସାରରେ ନିଜର ବୋଲି କେହି ନଥିଲେ । ଏହି ଭଳି ଜଣେ ସାଧୁଙ୍କର ପୁଣି ସ୍ୱାଧୀନତା ସଂଗ୍ରାମ ? ଏ କଥା ବିଶ୍ୱାସ କରି ହେଉ ନଥିଲେ ମଧ୍ୟ ସତ୍ୟ ।

ଏହି ମହାନ ବିପ୍ଳବୀ ହେଉଛନ୍ତି ଆଲୁରୀ ସୀତାରାମା ରାଜୁ । ଯାହାଙ୍କୁ କି ଜୀବିତ କିମ୍ୱା ମୃତ ଭାବେ ଧରାଇ ଦେଲେ ୧୫ ହଜାର ଟଙ୍କା (ସେତେବେଳର) ମିଳିବ ବୋଲି ଇଂରେଜ ସରକାର ସାରା ମାଲକାନଗିର ଅଞ୍ଚଳରେ ଘୋଷଣା କରିଥିଲେ । ସୀତାରାମା ରାଜୁଙ୍କ ଜନ୍ମ ଆନ୍ଧ୍ରପ୍ରଦେଶର ନରସାପୁର ଜିଲ୍ଲାର ଗୋଦାବରୀ ନଦୀ କୂଳରେ ଥିବା ମୋଗଲୁ ନାମକ ଗ୍ରାମରେ ୧୮୯୭ ମସିହା ଜୁଲାଇ ମାସ ୪ ତାରିଖରେ ହୋଇଥିଲା । ତାଙ୍କ ବାପା ଭେଙ୍କଟ ରାଜୁ ଜଣେ ବିଶିଷ୍ଟ ଚିତ୍ରକର ଓ ମାଆ ନାରାୟଣାମ୍ମା ଜଣେ ଧର୍ମପରାୟଣା ମହିଳା ଥିଲେ । ବାପା ଓ ମା'ଙ୍କର ଆଧାତ୍ମିକ କାର୍ଯ୍ୟାବଳୀ ପିଲାଟି ଦିନରୁ ରାମାରାଜୁଙ୍କ ଉପରେ ପ୍ରଭାବ ପକାଇଥିଲା । ଭେଙ୍କେଟରାଜୁ ପୁଅକୁ ସବୁବେଳେ ଇଂରେଜମାନଙ୍କ ବିରୁଦ୍ଧରେ ବୁଝାଉଥିଲେ । ଗୋରା ସରକାରଙ୍କ ଆଗରେ ମୁଣ୍ଡ ନ ନୁଆଁଇ ଦେଶ ପାଇଁ କିଛି କାମ କରିଯିବାକୁ ସେ ସର୍ବଦା ପରାମର୍ଶ ପ୍ରଦାନ କରୁଥିଲେ । ସେତେବେଳକୁ ସେମାନେ ରାଜମହେନ୍ଦ୍ରୀରେ ରହୁଥାନ୍ତି । ରାମାରାଜୁଙ୍କ

ଦୁର୍ଭାଗ୍ୟ ଯେ ଅଳ୍ପ ଦିନ ପରେ ତାଙ୍କ ବାପା ଓ ମାଆଙ୍କର ଦେହାନ୍ତ ହୋଇଗଲା ।

ପିତୃମାତୃହୀନ ରାମାରାଜୁ ଦାଦାଙ୍କ ଘରେ ରହି ପଢ଼ାପଢ଼ି କରିବାକୁ ଲାଗିଲେ । ସେଠାରେ ଦାଦାଙ୍କ ସହ ମନୋମାଳିନ୍ୟ ଘଟିବାରୁ ସେ କାକିନାଡ଼ା ଚାଲିଯାଇଁ ଏକ ଧର୍ମଶାଳାରେ ରହି ପଢ଼ାପଢ଼ି କଲେ । ସେଠାରୁ ପୁଣି ରାଜମହେନ୍ଦ୍ରୀ ଯାଇ କିଛି ଦିନ ପାଇଁ କଲେଜ ଶିକ୍ଷା ଲାଭ କରିଥିଲେ । ତାଙ୍କର ଏକ ବିଶିଷ୍ଟ ଗୁଣ ଥିଲା ଯେ, ସେ କୌଣସି ପ୍ରତିକୂଳ ପରିସ୍ଥିତିରେ ପଡ଼ିଗଲେ ସେଥିପାଇଁ ବିଚଳିତ ହେଉ ନଥିଲେ । କିଛି ଦିନ ସେ ବିଶାଖାପାଟଣାରେ ରହି ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରିଥିଲେ । ଇଂରେଜମାନଙ୍କ ଦ୍ୱାରା ଅତ୍ୟାଚାରିତ ହେଉଥିବା ଗରୀବ ନିରୀହ ସରଳ ଆଦିବାସୀମାନଙ୍କ ସେବା କରିବା ପାଇଁ ସେ ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ସେ ସେଠାରୁ କ୍ରୀଷ୍ଣାଦେବୀପେଟାକୁ ଚାଲି ଆସିଥିଲେ ଏବଂ ମାଲକାନଗିରି ସୀମାନ୍ତରେ ଥିବା ମାନ୍ୟମ ପାହାଡ଼ିଆ ଅଞ୍ଚଳକୁ ନିଜର ସେବା କ୍ଷେତ୍ର ରୂପେ ବାଛି ନେଇ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ ଘୋଷଣା କରିଥିଲେ । ଏହି ସ୍ୱାଧୀନତା ସଂଗ୍ରାମ ଏକ ମହା ସଂଗ୍ରାମରେ ପରିଣତ ହୋଇ ମାନ୍ୟମରୁ ମାଲକାନଗିରି ଯାଏଁ ବ୍ୟାପି ଯାଇଥିଲା ।

ମାଲକାନଗିରି ଅଞ୍ଚଳରେ ତାଙ୍କର ମୁଖ୍ୟ ସଂଗ୍ରାମସ୍ଥଳୀ ଥିଲା ଚିତ୍ରକୋଣ୍ଡା, ଏବଂ ତାର ଅଳ୍ପ ଦୂରରେ ଅବସ୍ଥିତ କଣ୍ଡାକାମେରୁର ଏକ ବିଖ୍ୟାତ ଶୈବପୀଠ । ସେଇ ଆଖପାଖ ଅଞ୍ଚଳରେ ଆତ୍ମଗୋପନ କରି ବିଭିନ୍ନ ଅଞ୍ଚଳରେ ହେଉଥିବା ସ୍ୱାଧୀନତା ସଂଗ୍ରାମକୁ ସେ ପରିଚାଳନା କରୁଥିଲେ । ସେ ଅହିଂସାର ପୂଜାରୀ ଥିଲେ । ଅନ୍ୟ ପକ୍ଷରେ ଇଂରେଜମାନଙ୍କୁ ଦେଶରୁ ତଡ଼ି ଭାରତମାତାକୁ ସ୍ୱାଧୀନ କରିବା ପାଇଁ ଅସ୍ତ୍ର ଧାରଣ କରିଥିଲେ । ସେ ଜଣେ ସାଧୁ ହୋଇ ବି କାନ୍ଧରେ ପରଶୁ ଓ ହାତରେ ଧନୁ ତୀର ଧାରଣ ପୂର୍ବକ ନିଜ ଜୀବନକୁ ବିପନ୍ନ କରି ଇଂରେଜମାନଙ୍କ ବିରୁଦ୍ଧରେ ସଶସ୍ତ୍ର ଯୁଦ୍ଧ ଘୋଷଣା କରିଥିଲେ । ତାଙ୍କର ବ୍ୟକ୍ତିତ୍ୱରେ ଏତେ ଯାଦୁ ଥିଲା ଯେ ଶହ ଶହ ଆଦିବାସୀ ଯୁବକ ଧନୁତୀର, କାତି ଓ ଟାଙ୍ଗିଆ ଧରି ରାଜୁଙ୍କ ସୈନ୍ୟବାହିନୀରେ ସାମିଲ ହୋଇଥିଲେ । ଲୋକମାନଙ୍କୁ ରାଜୁଙ୍କ ଉପଦେଶ

ଥିଲା ଯେ ଇଂରେଜମାନଙ୍କ ସବୁ କାମରେ ଅସହଯୋଗ କରିବା ଓ କୌଣସି ପ୍ରକାର କର ନ ଦେବା । ସେମାନଙ୍କୁ ଆଦୌ ନଡ଼ରିବା ଓ ଏ ଦେଶରୁ ତୁରନ୍ତ ବିତାଡ଼ିତ କରିବା । ସେ ଗାଆଁ ଗାଆଁ ବୁଲି ସଭାସମିତିମାନଙ୍କରେ ଲୋକମାନଙ୍କୁ ବୁଝାଉଥିଲେ ଓ ଯେଉଁଠାରେ ଆବଶ୍ୟକ ପଡୁଥିଲା ନିଜର ଗରିଲା ବାହିନୀ ସହ ଇଂରେଜ ସୈନ୍ୟଙ୍କ ଉପରକୁ କୁଦି ପଡୁଥିଲେ । ଦିନକୁ ଦିନ ଅଧିକରୁ ଅଧିକ ଆଦିବାସୀ ଯୁବକ ରାମାରାଜୁଙ୍କ ଗରିଲା ବାହିନୀରେ ଯୋଗଦାନ କଲେ । ଦେଶପ୍ରେମ ଭାବ ଚାରିଆଡ଼େ ଜାଗ୍ରତ ହେଲା । ଲୋକମାନେ ଆଉ ସରକାରଙ୍କୁ ଖାତିରି କଲେ ନାହିଁ । ନିଜ ନିଜ ଭିତରେ ପଞ୍ଚାୟତମାନ ଗଠନ କରି ସବୁ ସମସ୍ୟାର ସମାଧାନ କରିବାର ଉପାୟ ଶିଖିଲେ ।

ଏହା ଇଂରେଜମାନଙ୍କୁ ବଡ଼ ବାଧିଲା । ଫଳରେ ନିକଟସ୍ଥ ଆନ୍ଧ୍ରପ୍ରଦେଶରେ ଥିବା ଇଂରେଜ ତହସିଲଦାର ବାଷ୍ଟିୟାନ ଏକ ବିଶାଳ ସୈନ୍ୟବାହିନୀ ଧରି ରାମାରାଜୁଙ୍କୁ ଘେରିଯାଇ ବନ୍ଦୀ କଲେ । ତାଙ୍କୁ ନେଇ ନରସିପାଟଣା ଜେଲରେ ରଖାଗଲା । କିନ୍ତୁ, ରାଜୁଙ୍କ ଲୋକପ୍ରିୟତା ଏତେ ବଢ଼ିଯାଇଥିଲା ଯେ ଏଥିପାଇଁ ପ୍ରତ୍ୟେକ ମହଲରୁ ପ୍ରତିବାଦ ପ୍ରକାଶ ପାଇଲା । ରାଜୁଙ୍କ ବିରୁଦ୍ଧରେ କୌଣସି ସାକ୍ଷୀ ପ୍ରମାଣ ନଥିବାରୁ ବାଧ ହୋଇ ତାଙ୍କୁ ଖଲାସ କରିଦିଆଗଲା । ତହସିଲଦାର ବାଷ୍ଟିୟାନ ସାହେବ ରାଗି ଯାଇଁ ରାଜୁଙ୍କୁ ସାହାଯ୍ୟ କରୁଥିବା ଦୁଇ ଭାଇ ଗଣ୍ଡ ଦୋରା ଓ ମଲୁ ଦୋରାଙ୍କ ସମସ୍ତ ଜମିବାଡ଼ି ଛଡ଼ାଇ ନେଇ ଗଲେ । ଯାହା ଫଳରେ ଏହି ଦୁଇ ଜଣ ରାଜୁଙ୍କ ସୈନ୍ୟବାହିନୀରେ ଯୋଗଦାନ କରି ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ରାମାରାଜୁ ଯେଉଁଆଡ଼େ ଯାଉଥିଲେ ସାମ୍ନାସାମ୍ନି ହୋଇଗଲେ ଇଂରେଜମାନଙ୍କ ଉପରେ ସଶସ୍ତ୍ର ଆକ୍ରମଣ ଆରମ୍ଭ କରି ଦେଉଥିଲେ । ସେ ନିଜେ ସେନାବାହିନୀର ସେନାପତିତ୍ୱ ଗ୍ରହଣ କରିଥିଲେ । ବ୍ରିଟିଶ ସରକାରଙ୍କୁ ତାଙ୍କର ସନ୍ଦେଶ ଥିଲା "ତୁମେ ଶୀଘ୍ର ଏ ଦେଶ ଛାଡ଼ି ଚାଲିଯାଅ । ଏଥିପାଇଁ ଆମର ଏହି ସଂଗ୍ରାମ । ଯଦି , ମୁଁ ଯୁଦ୍ଧ କରୁ କରୁ ମରିଯାଏ, ତେବେ ମନେରଖ-ମୋ ଭଳି ହଜାର ହଜାର ରାଜୁ ଏ ଦେଶରେ ଜନ୍ମ ନେବେ ଓ ସେତେବେଳେ ତୁମେ ଏ ଦେଶ ଛାଡ଼ି ଚାଲିଯିବାକୁ ବାଧ ହେବ ।"

ଏହି ଅଦ୍ଭୁତ ସାଧୁ ସଂଗ୍ରାମୀଙ୍କ ବିଷୟରେ ଅନେକ କିମ୍ବଦନ୍ତୀ ଓ ଲୋକକଥା ଆଜିବି ମାଲକାନଗିରି ଜନମାନସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ରହିଛି । ଏହା ହେଉଛି- ଥରେ ସେ ମାଲକାନଗିରି ଅଞ୍ଚଳରେ ବୁଲୁ ବୁଲୁ ଜଣେ ଆଦିବାସୀ ରମଣୀ ମୁଣ୍ଡରେ କିଛି ଦାନ୍ତକାଠି ବିଡ଼ା ବୋହି ବିକ୍ରୀ କରିବାକୁ ରାମାରାଜୁଙ୍କ ପାଖକୁ ଆସିଲା । ସେ ସେତେବେଳେ ଗୋଟିଏ କଥା ଲକ୍ଷ୍ୟ କଲେ ଯେ ଉକ୍ତ ଆଦିବାସୀ ରମଣୀ ଜଣକ ବେଳେବେଳେ ଦୃଶ୍ୟମାନ ଓ ବେଳେବେଳେ ଅଦୃଶ୍ୟ ହୋଇଯାଉଛି । ସେତେବେଳେ ସେ ଏହାର ରହସ୍ୟ ଜାଣିବା ପାଇଁ ଚାହିଁଲେ । ଦାନ୍ତକାଠିରେ ହୁଏତ କିଛି କରାମତି ଥାଇପାରେ ଭାବି ସବୁତକ ଦାନ୍ତକାଠି କିଣି ପକେଇଲେ । ଘରକୁ ଯାଇ ସେ ସବୁ ଗୋଟି ଗୋଟି କରି ପରୀକ୍ଷା କରିବାକୁ ଲାଗିଲେ । ସତକୁ ସତ ସେ ଦେଖିଲେ ସେ ସେଥି ମଧ୍ୟରୁ ଗୋଟିଏ ଦାନ୍ତକାଠିରେ କିଛି କୁହୁକ ଗୁଣ ରହିଛି । ତାକୁ ସେ ନିଜ ପାଖରେ ରଖିଥିଲେ ଓ ତାହା ସାହାଯ୍ୟରେ ଇଂରେଜମାନଙ୍କୁ ଅନେକ ହଟଚମଟ୍ ବିଦ୍ୟା ଦେଖାଇ ଥରହର କରି ପାରୁଥିଲେ । ଏଠାରେ ଆଜିବି ଲୋକେ ରାମାରାଜୁଙ୍କୁ ହନୁମାନଙ୍କ ଅବତାର ବୋଲି ଭାବନ୍ତି । ଜଙ୍ଗଲର ବାଘ ବି ତାଙ୍କର ପୋଷା ମାନୁଥିବା କଥା ଏଠାକାର ଜନଶ୍ରୁତିରୁ ଜଣା ପଡ଼େ ।

ଏହା ସତ ଯେ ସେ ଯେଉଁ ଥାନା ଉପରେ ଚଢ଼ାଉ କରୁଥିଲେ ତା' ପୂର୍ବରୁ ଏକ ହାତଲେଖା ଚିଠି ଉକ୍ତ ଜାଗାକୁ ପ୍ରେରଣ କରି ସେମାନଙ୍କୁ ଜଣାଇ ଦେଉଥିଲେ । କେଉଁ ଦିନ କେଉଁ ସମୟରେ ଚଢ଼ାଉ କରାଯିବ, ତାହା ସେଥିରେ ଲିପିବଦ୍ଧ ରହୁଥିଲା । ଏହା ଥିଲା ରାମାରାଜୁଙ୍କ ବୈଶିଷ୍ଟ୍ୟତା, ବୈଚିତ୍ର୍ୟତା ଓ ନିଜସ୍ୱତା । ପୁଣି ଥାନା ଉପରେ ଚଢ଼ାଉ କରିସାରିବା ପରେ ଲୁଟି ନେଇଥିବା ବନ୍ଧୁକ ଓ ଗୁଳିର ପରିମାଣ ଲେଖି ଦେଇ ଆସନ୍ତି ଥାନା ଡାଏରୀରେ । ଚିଠିର ତଳେ ନିଜର ଦସ୍ତଖତ ଥାଏ । ୧୯୧୮ ମସିହାରୁ ରାଜବୋମାଙ୍ଗୀ ଜେଲରେ ଥିବା ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବୀରୟା ଦୋରାଙ୍କୁ ଜେଲ ଫାଟକ ଭାଙ୍ଗି ମୁକ୍ତ କଲାପରେ ସେଠାରେ ଥିବା ସମସ୍ତ ବନ୍ଧୁକ ଓ ଗୁଳି ଲୁଟିନେଇ ଏ ସମସ୍ତ ଲିପିବଦ୍ଧ କରି ଆସିଥିଲେ । ଚିନ୍ତାପଲ୍ଲୀ ଓ ନରସୀପାଟଣା ସମେତ 'ଅନେକ ସ୍ଥାନରେ ଥାନାଗୁଡ଼ିକ ଉପରେ ଚଢ଼ାଉ କରାଯାଇ ଅସ୍ତ୍ରଶସ୍ତ୍ର ସବୁ ସେମାନଙ୍କଠାରୁ ଛଡ଼ାଇ ଆଣିଥିଲେ । ଏମିତି ବେଳ ଆସିଲା ଇଂରେଜ ପୋଲିସମାନେ ରାମାରାଜୁଙ୍କ ନାମ ଶୁଣିଲେ ଭୟରେ ଥରୁଥିଲେ । ଚିନ୍ତିତ

ଗୋରା ସରକାର ରାଜୁଙ୍କୁ ଧରିବା ପାଇଁ ସ୍ୱତନ୍ତ୍ର ତାଲିମ ପ୍ରାପ୍ତ ସୈନ୍ୟମାନଙ୍କୁ ବିଭିନ୍ନ ସ୍ଥାନକୁ ପଠାଇଥିଲେ । ତଥାପି ରାଜୁଙ୍କ ସନ୍ଧାନ ସେମାନେ ପାଇ ନଥିଲେ । ବେଳେ ବେଳେ ଘଞ୍ଚ ଜଙ୍ଗଲ ମଧ୍ୟରେ ଧସ୍ତାଧସ୍ତି ହେଲେ ରାଜୁଙ୍କ ଗରିଲାବାହିନୀ ଇଂରେଜ ସୈନ୍ୟମାନଙ୍କୁ ପରାସ୍ତ କରି ଦେଉଥିଲେ କାରଣ ଜଙ୍ଗଲ ଭିତରେ କିଭଳି ଲୁଚି ଛପି ଯୁଦ୍ଧ କରାଯିବ ଏହାର କୌଶଳ ସେମାନେ ଜାଣିଥିଲେ ।

ମାଲକାନଗିରି ସୀମାନ୍ତରେ ୧୯୨୨ ମସିହାରୁ ଇଂରେଜ ସୈନ୍ୟମାନେ ସକ୍ରିୟ ହୋଇ ଉଠିଥିଲେ । ସେହି ବର୍ଷ ସେପ୍ଟେମ୍ବର ମାସରେ ଲଢ଼େଇ ବେଳେ ବ୍ରିଟିଶ ସେନାପତି ଟ୍ରେମୟ ହିୟର ଗୁରୁତର ଭାବେ ଆହତ ହୋଇଥିବା ବେଳେ ଧମନପଲ୍ଲୀ ଠାରେ ଧସ୍ତାଧସ୍ତି ସମୟରେ ବ୍ରିଟିଶ ରେଜିମେଣ୍ଟର ଦୁଇ ଜଣ ମୁଖ୍ୟ ସୈନିକ ଅଫିସର ରାୟଟର ଓ କବର୍ଡ଼ ପ୍ରାଣ ହରାଇଥିଲେ । ଏହାପରେ ରାଜୁଙ୍କ ଖ୍ୟାତି ଚାରିଆଡ଼େ ବଢ଼ିବାକୁ ଲାଗିଲା । କଟାଘାରେ ଚୂନ ଦେବା ଭଳି ଇଂରେଜମାନଙ୍କ ମନରେ ପ୍ରତିଶୋଧର ବହ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ସେମାନେ ଏହାକୁ ଅତ୍ୟନ୍ତ ଗୁରୁତର କଥା ଭାବେ ଗ୍ରହଣ କରିନେଲେ । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆଉ ପାଖ ଜେଲରେ ରଖା ଗଲାନାହିଁ । ନିକଟସ୍ଥ ଆନ୍ଧ୍ରପ୍ରଦେଶ ଜେଲରେ ବନ୍ଦୀଥିବା ପଞ୍ଜାବର ଜଣେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ପୃଥ୍ୱୀ ସିଂ ଆଜାଦଙ୍କୁ ରାଜୁଙ୍କ ଡରରେ ଦୂର ଜେଲକୁ ସ୍ଥାନାନ୍ତରିତ କରାଗଲା । ୧୯୨୩ ମସିହା ଏପ୍ରିଲ ମାସରେ ମାନ୍ଦ୍ରାଜ ଗଭର୍ଣ୍ଣର ୱାଲିଂଟନ ସରକାରୀ ଫୌଜକୁ ସଜାଗ ରହିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

୧୯୨୩ ମସିହା ସେପ୍ଟେମ୍ବର ମାସର ଏକ ଘଟଣା, ରାଜୁ ସେତେବେଳେ ମାଲକାନଗିରି ଥାନା ଉପରେ ଚଢ଼ାଉ କରାଯିବ ବୋଲି ଚିଠି ଲେଖିଥିଲେ । ଏ ଖବର ପାଇ ଇଂରେଜ ପୋଲିସ ବାହିନୀଙ୍କ ମନରେ ଭାଳେଣି ପଡ଼ିଗଲା । ଫଳ ସ୍ୱରୂପ ସେମାନେ ତୁରନ୍ତ ଥାନାରେ ଥିବା ସମସ୍ତ ଅସ୍ତ୍ର ଶସ୍ତ୍ର ଅନ୍ୟତ୍ର ଲୁଚାଇ ରଖିଦେଲେ । ଏକଥା ୧୯୪୧ ମସିହାରେ କୋରାପୁଟର ପ୍ରଥମ ଇଂରେଜ କଲେକ୍ଟର ବେଲ୍ ସାହେବ ତାଙ୍କ ଗେଜେଟିୟରରେ ଉଲ୍ଲେଖ କରି ଲେଖିଛନ୍ତି-"The most notorious of all fituris was the

raising of 1922 which was led by Alluri Sitarama Raju and was not supressed until its leader was killed in 1924.

x . x x x

However in September 1923, Sitarama Raju and his gang came as far as Malkangiri in search of arms and provender. But all weapons has been removed by the local police station and rebellls left Malkangiri empty handed after one day's stay, abstaining for some reason from refling the Sub-Treasury".

ଏହିଭଳି କିଛିଦିନ ଗଡ଼ି ଚାଲିଲା । କିନ୍ତୁ, ଇଂରେଜମାନେ ରାଜୁଙ୍କୁ ଆଉ ଧରିପାରି ନଥିଲେ । ୧୯୨୪ ମସିହା ବେଳକୁ ଆସାମ ରାଇଫଲ୍ ବାହିନୀ ଓ ମାଲାବାର ବାହିନୀକୁ ରାଜୁଙ୍କ ସଂଗ୍ରାମ ଅଞ୍ଚଳଗୁଡ଼ିକୁ ପଠାଗଲା । ଚିନ୍ତୁକୋଣ୍ଡା ସମେତ ଅନ୍ୟାନ୍ୟ ଅଞ୍ଚଳକୁ ଚାରିପଟୁ ଘେରିଯିବା ପାଇଁ ସେମାନଙ୍କୁ ନିର୍ଦ୍ଦେଶ ଦିଆଗଲା । ଅନେକ ସ୍ଥାନରେ ରାଜୁଙ୍କ ଗରିଲା ବାହିନୀ ଦକ୍ଷତାର ସହ ମୁକାବିଲା କଲା । ଏହି ଘମାଘୋଟ ଲଢ଼େଇ ବେଳେ ଅଳ୍ପ ସଂଖ୍ୟକ ଇଂରେଜ ସୈନ୍ୟ ନିଧନ ହେଲାବେଳେ ରାଜୁଙ୍କ ଗରିଲାବାହିନୀର ଅନେକ ବିପ୍ଳବୀ ମୃତ୍ୟୁବରଣ କଲେ । ଯେଉଁ ସବୁ ଅଞ୍ଚଳରେ ରାଜୁ ବୁଲାବୁଲି କରୁଥିଲେ ସେହି ସ୍ଥାନରେ ଲାଠି ମାଡ଼ ସହିତ ଅନ୍ୟାୟ ଭାବରେ ଲୋକଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରାଗଲା । ଏହି ସବୁ ଘଟଣା ରାଜୁଙ୍କ ମନକୁ ବିଚଳିତ କରିଦେଲା । ଏହି ପରି ସନ୍ଧିକ୍ଷଣରେ ସେ କ'ଣ କରିବେ ନକରିବେ କିଛି ସ୍ଥିର କରି ପାରିଲେ ନାହିଁ ।

ରାଜୁଙ୍କ ପାଇଁ ବୋଧହୁଏ ଦୁର୍ଭାଗ୍ୟର ସମୟ ଆସି ପହଁଞ୍ଚି ଯାଇଥିଲା। ଗୋଟିଏ ପକ୍ଷରେ ଶହ ଶହ ବିପ୍ଳବୀଙ୍କ ମୃତ୍ୟୁ , ଅନ୍ୟ ପକ୍ଷରେ ତାଙ୍କୁ ସାହାଯ୍ୟ କରୁଥିବା ନିରୀହ ଆଦିବାସୀଙ୍କ ଉପରେ ବର୍ବର ଅତ୍ୟାଚାର । ଏହି ସବୁ କଥା ନେଇ ସେ ଦୁଃଖରେ ଭାଙ୍ଗି ପଡ଼ିଲେ । ଏହା ଫଳରେ ସେ ଚିନ୍ତୁକୋଣ୍ଡା ଅଞ୍ଚଳ ଛାଡ଼ି ପୁଣି ଫେରିଯାଇଥିଲେ ସେହି ସ୍ଥାନକୁ, ଯେଉଁଠାରୁକି ସେ ତାଙ୍କର ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଥିଲେ । କ୍ରୀଷ୍ଣାଦେବୀପେଟାରେ କିଛି ଦିନ

ରହି ଗଭୀର ଧ୍ୟାନରେ ମଗ୍ନ ହୋଇ ଆତ୍ମ ସମୀକ୍ଷା କରିବାକୁ ଲାଗିଲେ । ଏଣେ ସମ୍ମୁଖ ଯୁଦ୍ଧରେ ନ ପାରି ଇଂରେଜ ସୈନ୍ୟମାନେ ରାଜୁଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ରଚନା କଲେ । ରାଜୁଙ୍କ ଜଣେ ପୁରୁଣା ବନ୍ଧୁ ସହାୟତାରେ ଫୁସୁଲାଫୁସୁଲି କରି ଜିଲ୍ଲାପାଳ ଖବର ଦେଇଛନ୍ତି, ସନ୍ଧି କରିବାକୁ କହି ରାଜୁଙ୍କୁ ଡକାଇ ନେଲେ । ତାଙ୍କର ସରଳ ବାବାଜୀ ହୃଦୟ ଏ ସବୁ କୂଟକପଟ ଜାଣି ପାରି ନଥିଲେ । ସେ ସେମାନଙ୍କ କଥାରେ ଚାଲି ଯାଇଥିଲେ ସନ୍ଧି କରିବାକୁ । ମାତ୍ର ସେ ସେଠାରେ ପହଁଞ୍ଚୁ ପହଁଞ୍ଚୁ ରାଜୁଙ୍କୁ ଏକ ତେନ୍ତୁଳି ଗଛରେ ବାନ୍ଧି ଦିଆଗଲା । ରାଜୁ ତାର ପ୍ରତିବାଦ କଲେ । ଜିଲ୍ଲାପାଳଙ୍କ ନାଆଁରେ ଏମାନେ ତାଙ୍କୁ ସେଠାକୁ ମିଛରେ ଡାକି ଆଣିଥିବା କଥା ସେ ଜାଣି ପାରିଲେ ସୁଦ୍ଧା ତାଙ୍କ ପକ୍ଷେ ଆଉ କିଛି କରିବାର ଉପାୟ ନଥିଲା । ତାଙ୍କର କୌଣସି କଥା ଶୁଣାଗଲା ନାହିଁ ।

୧୯୨୪ ମସିହା ମେ ମାସ ୬ ତାରିଖରେ ମେଜର ଗୁଡ଼ାଲଙ୍କ ଆଦେଶ କ୍ରମେ ମାଲବାର ସୈନ୍ୟମାନେ ଏକତ୍ର ତାଙ୍କ ଉପରେ ଗୁଳି ଚଳାଇଥିଲେ । ଗୋଟିଏ ବ୍ୟକ୍ତି ଏତେଗୁଡ଼ିଏ ଗୁଳି- ସେ ଢଳି ପଡ଼ିଥିଲେ ସେହିଠାରେ । ଜଣେ ସନ୍ୟାସୀ ହୋଇ ବି ସୈନିକ ଭାବେ ଲଢ଼େଇ କରି ଦେଶ ପାଇଁ ଶହୀଦ ହୋଇ ଯାଇଥିଲେ । ସେ ଯେଉଁ ଇତିହାସ ସୃଷ୍ଟି କରିଗଲେ ତାହା ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ତାଙ୍କର ସାହସିକତା, ତ୍ୟାଗ ଓ ସଂଗ୍ରାମକୁ ସାରା ଭାରତବର୍ଷ ତଥା ଏହି ମାଲ୍ୟବନ୍ତ ସବୁବେଳେ ମନେ ପକାଇ ଝୁରି ହେଉଥିବ । ❖❖❖

# ବିପ୍ଳବୀ ତାମା ଦୋରା

ଏହି ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ତଥା କୋୟା ବିପ୍ଳବର ନେତା ତାମା ଦୋରା ଘଞ୍ଚ ଜଙ୍ଗଲ ଘେରା ମାଲକାନଗିରି ଜିଲ୍ଲାର ପଡ଼ିଆ ନିକଟସ୍ଥ କୋଣ୍ଡାପଲ୍ଲୀ ଗ୍ରାମରେ ୧୮୩୮ ମସିହା ମାଘ ମାସ ଦ୍ୱିତୀୟ ସୋମବାର ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାପା ରାମା ଦୋରା ସେହି ଗ୍ରାମର ମୁଖିଆ ବା ପେଦା ଥିଲେ । ଏଠାକାର ଜନଶ୍ରୁତି ଅନୁଯାୟୀ ତାଙ୍କର ଜନ୍ମ କୁଲୁରୁ ଯୋଗରେ ହୋଇଥିଲା । ଶୀତ ଦିନରେ କୁଲୁରୁ( ବଗ ଜାତୀୟ) ପକ୍ଷୀ ନଦୀନାଳମାନଙ୍କରେ ରାବିବା ମୁହୂର୍ତ୍ତକୁ ଜନ୍ମ, ବିବାହ ଓ ଗୃହ ନିର୍ମାଣାଦି କାମ ପାଇଁ ଏଠାରେ ଅତ୍ୟନ୍ତ ଶୁଭ ମନେକରାଯାଉଥିଲା । ସେତେବେଳେ ତାଙ୍କର ନାମକରଣ କରାଯାଇଥିଲା ଭୀମା । ମସ୍ତକ ସମ୍ମୁଖ ଭାଗ ଲଣ୍ଡା, କାନରେ କୁଣ୍ଡଳ ଓ ପଛ ଭାଗରେ ଚୁଟି ବାନ୍ଧିଥିବା ଏହି ହୃଷ୍ଟପୁଷ୍ଟ ଲମ୍ବା ବ୍ୟକ୍ତିଙ୍କୁ ଦେଖିଲେ ସେ କେଉଁ ରାଜାଙ୍କର ବୈଦ୍ୟ ପରି ମନେହୁଅନ୍ତି । କୋୟା ପରିବାରରେ ଜନ୍ମିତ ଭୀମା ଆଦୌ ପଢ଼ାପଢ଼ି କରିନଥିଲେ। ପିଲାଟି ଦିନରୁ ପ୍ରକୃତି କ୍ରୋଡ଼ରେ ବଢ଼ିଥିବା ଏହି ପିଲାଟି ପିତାଙ୍କ ଦେହାନ୍ତ ପରେ ଅଳ୍ପ ବୟସରେ ଗାଁର ମୁଖିଆ ହେବାର ସୌଭାଗ୍ୟ ଲାଭ କରିଥିଲେ । ଏହି ସମୟରେ ସାରା ମାଲକାନଗିରି ଅଞ୍ଚଳ ଇଂରେଜ ଶାସନରେ ଅତିଷ୍ଠ ହୋଇପଡ଼ିଥିଲା । ବେଠିଗିରି, ଅନ୍ୟାୟ ରାଜସ୍ୱ ଆଦାୟ, ଫରେଷ୍ଟ ଗାର୍ଡ ତଥା ପୋଲିସ ଦାରୋଗାମାନଙ୍କର ଅମାନୁଷିକ ଅତ୍ୟାଚାର ସାଙ୍ଗକୁ ଜମିଦାରମାନଙ୍କ ଶୋଷଣରେ ଆଦିବାସୀମାନେ ସର୍ବସ୍ୱାନ୍ତ ହୋଇ ପଡ଼ିଥିଲେ । ଏତିକିବେଳେ ଏକ ବିପ୍ଳବ ମୁଣ୍ଡ ଟେକି ଉଠିଥିଲା ଯାହାକି ଭାରତ ଇତିହାସରେ କୋୟା ବିପ୍ଳବ ନାମରେ ଖ୍ୟାତ । ଏହାର ନେତୃତ୍ୱ ନେଇଥିଲେ

ତାମା ଦୋରା । ଏହି ବିପ୍ଳବ ଥିଲା ଇଂରେଜମାନଙ୍କ ବିରୁଦ୍ଧରେ ତଥା ସେମାନଙ୍କର ଅନ୍ୟାୟ ଶାସନ ଓ ଅତ୍ୟାଚାର ବିରୁଦ୍ଧରେ । ନିଜର ଅସାଧାରଣ ବ୍ୟକ୍ତିତ୍ୱ ପାଇଁ ଦିନେ ସେ ହାଇଦରାବାଦ ନିଜାମଙ୍କର ନିକଟତର ହୋଇପାରିଥିଲେ । ନିଜାମ ଖୁସି ହୋଇ ଏକ ତାମ୍ରଫଳକ ତାଙ୍କୁ ଉପହାର ଦେଇ ସମ୍ମାନିତ କରିଥିଲେ । ଉକ୍ତ ଦିନ ଠାରୁ ଭୀମା ବଦଳରେ ତାମା ଦୋରା ନାମରେ ସେ ବେଶ୍ ପରିଚିତ ହୋଇ ପାରିଥିଲେ । ସେ ଅବିବାହିତ ଥିବାରୁ ଘରସଂସାରର ମୋହମାୟା ତାଙ୍କ ସଂଗ୍ରାମୀ ଜୀବନକୁ ଛୁଇଁ ପାରିନଥିଲା ।

ପିତା ରାମା ଦୋରାଙ୍କ ଅନ୍ତିମ ଇଚ୍ଛା ଓ ଉପଦେଶ ଅନୁସାରେ ସେ ଅନ୍ୟାୟ ବିରୁଦ୍ଧରେ ଲଢ଼ିବା ପାଇଁ ସଂକଳ୍ପ କରିଥିଲେ । ଇଂରେଜ ଶାସନ ବିରୁଦ୍ଧରେ ପ୍ରଥମେ ଗାଁ ଗାଁ ବୁଲି ସେଠାକାର ମୁଖିଆମାନଙ୍କୁ ଏହି ବିଷୟରେ ଅବଗତ କରାଇଥିଲେ । ଧୀରେ ଧୀରେ ସମଗ୍ର କୋୟା ସମାଜ ତାଙ୍କର ବ୍ୟକ୍ତିତ୍ୱ ତଥା ଆହ୍ୱାନରେ ଜାଗ୍ରତ ହୋଇ ଉଠିଥିଲେ । ସମସ୍ତଙ୍କୁ ଏହି ଚିନ୍ତାଧାରାରେ ଉଦବୁଦ୍ଧ କରାଇବା ପରେ ଆରମ୍ଭ ହୋଇଯାଇଥିଲା ଇଂରେଜମାନଙ୍କ ଉପରେ ସଂଘବଦ୍ଧ ଲଢ଼େଇ । ଆନ୍ଧ୍ରପ୍ରଦେଶର ଭଦ୍ରାଚଳମଠାରୁ ଆରମ୍ଭ କରି ମାଲକାନଗିରି ସମେତ ମଧ୍ୟପ୍ରଦେଶର ବସ୍ତର ପର୍ଯ୍ୟନ୍ତ ଏହି ଆନ୍ଦୋଳନ ବ୍ୟାପି ଯାଇଥିଲା । ତାଙ୍କର ମୁଖ୍ୟ ଆଡଡ୍ୱାସଳୀ ଥିଲା ମୋଟୁ । ସେଠାରେ ରହି ସେ ଆନ୍ଦୋଳନ ପରିଚାଳନା କରୁଥିଲେ । ଏକଦା ଯେଉଁ ସରଳ କୋୟା ଆଦିବାସୀ ଅତ୍ୟାଚାର ଭୟରେ ସାଧାରଣ ପୋଲିସଟାଏ ଦେଖିଲେ ଘରଦ୍ୱାର ଛାଡ଼ି ଜଙ୍ଗଲକୁ ଦୌଡ଼ି ପଳାଇ ଯାଉଥିଲେ, ଏଣିକି ସେମାନେ ଅଣ୍ଟାଭିଡ଼ି ପୋଲିସ ବିରୁଦ୍ଧରେ ସଂଗ୍ରାମ କରିବାକୁ ଆଗେଇ ଆସିଲେ । ସେତେବେଳେ ସେମାନେ ଆଦୌ ଭୟ ନ କରି ହାତରେ ଧନୁଶର ଧରି ଦଳଦଳ ହୋଇ ଗରିଲା ଯୁଦ୍ଧ ପାଇଁ ବାହାରି ପଡ଼ିଥିଲେ । ଏହି ବିପ୍ଳବ କ୍ରମେ ଅନ୍ୟ ଅଞ୍ଚଳକୁ ମଧ୍ୟ ବ୍ୟାପିବାକୁ ଲାଗିଲା । ବ୍ରିଟିଶ ସରକାରଙ୍କ ଶାସନ ପାଇଁ ଏହା ଘୋର ବିପଦ ସୃଷ୍ଟି କଲା ।

ତାମା ଦୋରା ପ୍ରଥମେ ପଡ଼ିଆ ଥାନା ଉପରେ ଚଢ଼ାଉ କରିଥିଲେ । ସେଠାରେ ଥିବା ଜଣେ ଇନିସପେକ୍ଟରଙ୍କ ସମେତ ଛଅ ଜଣ ସିପାହୀ ଏହି ଆକ୍ରମଣରେ ନିହତ ହୋଇଥିଲେ । ଅନେକ ପୋଲିସ କର୍ମଚାରୀ ପ୍ରାଣ

ବିକଳରେ ଥାନା ଛାଡ଼ି ଦୌଡ଼ି ପଳେଇ ଯାଇଥିଲେ । ପରେ ପରେ ମୋଟୁ ଉପରେ ଚଢ଼ାଉ କରିବା ଖବର ପାଇ ସେଠାରେ ମୁତୟନ ଥିବା ସମସ୍ତ ପୋଲିସ ଛତ୍ରଭଙ୍ଗ ଦେଇଥିଲେ । ଏହି ବିପ୍ଳବ କ୍ରମେ ୧୮୭୯ରୁ ବ୍ୟାପକ ହୋଇ ୧୮୮୦ ମସିହା ଜୁଲାଇ ମାସ ବେଳକୁ ଉଗ୍ର ରୂପ ଧାରଣ କରିଥିଲା । ଫଳ ସ୍ୱରୂପ କୌଣସି ଇଂରେଜ କର୍ମଚାରୀ ଏହା ମଧ୍ୟକୁ ପ୍ରବେଶ କରିବା ପାଇଁ ସାହାସ କରିପାରି ନଥିଲେ । ସେତିକିବେଳେ ତାମା ଦୋରା ଦକ୍ଷିଣ ମାଲକାନଗିରିରେ ନିଜକୁ ରାଜା ବୋଲି ଘୋଷଣା କରିଥିଲେ । ଏଠାକାର ସମସ୍ତ ଶାସନ ବ୍ୟବସ୍ଥା ତାଙ୍କ କଥାରେ ପରିଚାଳିତ ହେବାକୁ ଲାଗିଲା । ଇଂରେଜମାନେ ୧୮୭୨ ମସିହାରେ ଗାଦିଚ୍ୟୁତ ହୋଇଥିବା ମାଲକାନଗିରି ରାଣୀ ବାଙ୍ଗାରୁ ଦେବୀ ଏହି ସମୟରେ ପୁଣି କ୍ଷମତାକୁ ଆସିବା ପାଇଁ ଚେଷ୍ଟା କରିଥିଲେ । ଏଥିପାଇଁ ସମସ୍ତ ସହାୟତା ଦେବାକୁ ତାମା ଦୋରା ରାଜି ହୋଇଥିଲେ ।

ଅଳ୍ପ ଦିନ ମଧ୍ୟରେ କୋୟା ବିପ୍ଳବୀମାନେ ହାତରେ ଧନୁ ତୀର ଆଦି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଗଲିଲା ଯୁଦ୍ଧ ପାଇଁ ସମସ୍ତ କୌଶଳ ଶିକ୍ଷା କରିନେଇଥିଲେ । ବିପ୍ଳବୀମାନଙ୍କ ସମ୍ମୁଖରେ ବନ୍ଧୁକଧାରୀ ଇଂରେଜ ପୋଲିସ ନିଜକୁ ତୁଚ୍ଛ ମନେ କରିଥିଲେ । ଏକ ବିଶାଳ କୋୟା ସୈନ୍ୟବାହିନୀ ଗଠନ କରିବାରେ ସଫଳ ହୋଇ ତାମା ଦୋରା ଏକ ଅଭିନବ କୋୟା ସାମ୍ରାଜ୍ୟ ପାଇଁ ସ୍ୱପ୍ନ ଦେଖିଥିଲେ । ଏହି ସବୁ କଥା ପାଇଁ ଇଂରେଜମାନେ ମୁଣ୍ଡରେ ହାତ ଦେଇ ଚିନ୍ତିତ ହୋଇପଡ଼ିଥିଲେ । ସେମାନେ ଜାଣିପାରିଥିଲେ ଯେ ଏହାକୁ ଯଦି ଦୃଢ଼ ଭାବରେ ଦମନ କରା ନଯାଏ ତେବେ ଏହା ଦେଶର ଅନ୍ୟ ଅଞ୍ଚଳକୁ ମଧ୍ୟ ବ୍ୟାପିଯିବ । ୧୮୮୦ ମସିହା ଜୁଲାଇ ମାସର କଥା, ହାଇଦରାବାଦ୍ ଠାରୁ ଏକ ଇଂରେଜ ସୈନ୍ୟ ବାହିନୀକୁ ମାଲକାନଗିରି ଯିବା ପାଇଁ ହଠାତ୍ ନିର୍ଦ୍ଦେଶ ଦିଆଗଲା । କାରଣ ଏହା ବ୍ୟତୀତ ସେମାନଙ୍କ ପାଇଁ ଅନ୍ୟ କୌଣସି ବିକଳ୍ପ ପନ୍ଥା ନଥିଲା । ଇଂରେଜ କର୍ଣ୍ଣେଲ ମେକ୍ବିଡ଼ଙ୍କ ନେତୃତ୍ୱରେ ୧୦୦ ଜଣ ସୈନ୍ୟ ମାଲକାନଗିରି ଆଡ଼କୁ ଅଗ୍ରସର ହୋଇଥିଲେ । ଗୁପ୍ତଚର ଆସି ଖବର ଦେବା ପରେ କୋୟା ବିପ୍ଳବୀମାନେ ଲୁଚି ଛପି ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇ ରହିଲେ । ଏହାପରେ ବନ୍ଧୁକ ଗୁଳିକୁ ଭୟ ନକରି ଏମିତି

ଗରିଲା ଯୁଦ୍ଧ ହେଲା ଯେ ଇଂରେଜ ସୈନ୍ୟମାନେ ପରାସ୍ତ ହୋଇ ପଛଘୁଞ୍ଚା ଦେଇଥିଲେ । ଏହି ଲଢ଼େଇ ମୋଟୁ ନିକଟରେ ସଂଘଟିତ ହୋଇଥିଲା । ଚତୁର ବଣିକ ଜାତି ନାନା କୌଶଳ ପାଇଁ କିଛିଦିନ ଚୁପ୍ ରହିବା ପରେ ପୁଣି ଅତର୍କିତ ଆକ୍ରମଣ କରିଥିଲେ । ଏହା ପୂର୍ବରୁ ଗୁପ୍ତ ଭାବରେ ଜୟପୁର ରାଜାଙ୍କର ପାଇକ ସୈନ୍ୟଙ୍କ ସହାୟତା ମଧ୍ୟ ମଗାଯାଇଥିଲା । ଇଂରେଜ ସରକାରଙ୍କ ଅନୁରୋଧ କ୍ରମେ ଜୟପୁର ରାଜାଙ୍କ ସୈନ୍ୟମାନେ ମାଲକାନଗିରିର ପୂର୍ବ ପଟୁ ନିଷ୍ଠୁର ଆକ୍ରମଣ ଆରମ୍ଭ କରିଦେଇଥିଲେ । ଉଭୟ ପଟୁ ହୋଇଥିବା ହଠାତ୍ ଆକ୍ରମଣରେ କୋୟା ବିପ୍ଳବୀଙ୍କୁ ନିର୍ମମ ଭାବେ ହତ୍ୟା କରାଯାଇଥିଲା । ଅପ୍ରସ୍ତୁତ କୋୟା ସୈନ୍ୟମାନେ ସାହସ କରି କିଛି ଦିନ ପାଇଁ ମୁକାବିଲା କରିଥିଲେ ହେଁ ଶେଷରେ ଆତ୍ମ ସମର୍ପଣ କରିବା ପାଇଁ ବାଧ୍ୟ ହୋଇଥିଲେ । ଏହି ଯୁଦ୍ଧର ସ୍ମାରକୀ ଭାବରେ ଆଜି ବି ଭୈରବ ମନ୍ଦିର ସମ୍ମୁଖରେ ଥିବା ରାଜାରାଣୀ ପାହାଡ଼ ଓ ତାହାର ଚାରିପାଖରେ ଥିବା ପଥର ପାଚେରୀ କୋୟା ବିପ୍ଳବର ସୂଚନା ପ୍ରଦାନ କରେ । ଏହି ସ୍ଥାନକୁ ସେତେବେଳେ ବିପ୍ଳବୀମାନେ ଗରିଲାଯୁଦ୍ଧ ପାଇଁ ବ୍ୟବହାର କରିଥିଲେ ।

ଅନେକ ବିପ୍ଳବୀଙ୍କୁ ମଧ୍ୟ ବନ୍ଦୀ କରାଯାଇଥିଲା । କିନ୍ତୁ ତାମା ଦୋରାଙ୍କୁ ସହଜରେ ଇଂରେଜମାନେ ଧରି ପାରି ନଥିଲେ । ମଧ୍ୟସ୍ଥି ଜରିଆରେ ସନ୍ଧି କରିବାକୁ କୁହାଗଲା । କିନ୍ତୁ, ସେ ଇଂରେଜମାନଙ୍କୁ ବିଶ୍ୱାସ କଲେ ନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ସଂଗ୍ରାମ କରିବା ପାଇଁ ନେଇଥିବା ନିଷ୍ପତ୍ତିରେ ଅଟଳ ରହିଥିଲେ ।

ସେହିଦିନ ଥିଲା ୧୮୮୦ ମସିହା ଜୁଲାଇ ମାସ ୨୮ ତାରିଖ । ତାମା ଦୋରାଙ୍କୁ ଇଂରେଜ ସୈନ୍ୟମାନେ ମୋଟୁ ଜଙ୍ଗଲରେ ଘେରି ପକାଇଥିଲେ । କ୍ରମେ ଦୁର୍ବଳ ଓ କ୍ଳାନ୍ତ ହୋଇ ପଡ଼ିଥିବା ତାମା ଦୋରା ଅନେକ ଚେଷ୍ଟା ସତ୍ତ୍ୱେ ସେମାନଙ୍କ କବଳରୁ ନିଜକୁ ମୁକୁଳାଇ ପାରି ନଥିଲେ । କ୍ରୋଧୀତ ଇଂରେଜ ସୈନ୍ୟମାନେ ଝାମ୍ପିପଡ଼ି ତାଙ୍କ ଛାତି ଉପରକୁ ଅଜସ୍ର ଗୁଳି ବର୍ଷଣ କରିଥିଲେ । ସେହିଠାରେ ହିଁ ଭାରତମାତା କୋଳରେ ସବୁଦିନ ପାଇଁ ସେ ନିଦ୍ରା ଯାଇଁ ଦେଶ ପାଇଁ ଶହୀଦ ହେଲେ । ଇଂରେଜମାନେ ତାଙ୍କ ମର ଶରୀରକୁ ନିକଟସ୍ଥ ରମ୍ପା ଜଙ୍ଗଲରେ ପୋପାଡ଼ି ଦେଇଥିଲେ ।

୧୯୪୧ ମସିହାରେ କୋରାପୁଟ ଜିଲ୍ଲାର ପ୍ରଥମ ଇଂରେଜ କଲେକ୍ଟର ବେଲ ସାହେବ ଏହି ଘଟଣା ଉଲ୍ଲେଖ କରି ଲେଖିଛନ୍ତି-

In April 1880 Tamma Dora, the great Koya leader, entered the taluk and captured the Podia Police-station after a fight. The Inspector and six constables were killed. Colonel Macquoid of Hyderabad contigent marched with 100 men to protect Motu, but was attacked on the 6 May and retreated. This set the country in a blaze and Tamma Dora was hailed as the Raja of southern Malkangiri. Later on, however he was driven back to the Rampa Jungles and in July 1880, refusing to surrender was attacked and shot by the police.

ଉପଯୁକ୍ତ ନେତୃତ୍ୱ ଅଭାବରୁ କିଛି ଦିନ ପରେ ଏହି ବିପ୍ଳବର ପରିସମାପ୍ତି ଘଟିଥିଲା । ଆଜି ତାମା ଦୋରା ନାହାନ୍ତି ସତ କିନ୍ତୁ ତାଙ୍କର ଦେଶ ପ୍ରେମ, ସ୍ୱାଧୀନତା ସଂଗ୍ରାମ, ତ୍ୟାଗ ଓ ବଳିଦାନ ସବୁଦିନ ପାଇଁ ତାଙ୍କୁ ଅମର କରି ରଖିଥିବ । ଦୁଃଖର ବିଷୟ ଯେ ଏହିଭଳି ଜଣେ ସ୍ୱାଧୀନତା ସଂଗ୍ରମୀଙ୍କର ସ୍ମୃତି ରକ୍ଷା ପାଇଁ ସରକାରୀ ବା ବେସରକାରୀ ସ୍ତରରେ ଉପଯୁକ୍ତ ପଦକ୍ଷେପ ଏ ଯାଏଁ ନିଆଯାଇ ପାରିନାହିଁ ।

ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ ତଥା ପ୍ରତିଷ୍ଠିତ କବି ରାଧାମୋହନ ଗଡ଼ନାୟକ ତାଙ୍କର 'ତାମା ଦୋରା ' କବିତାରେ ତାମା ଦୋରାଙ୍କ ଗୁଣ ଗାନ କରି ଲେଖିଛନ୍ତି-

*କୋଇଆ ଜାତିର ଭାଇମାନେ ମୋର*
*କଅଣ କରୁଚ ଆଜି,*
*ଜାଣି ପାରୁ ନାହିଁ ବଣ କମ୍ପାଇ*
*କଅଣ ଉଠୁଛି ବାଜି ?*

\+ + +

ଅମିତ ଜଣ ଗର୍ଜି ଉଠିଲା
'ରଜତ ଆମର ତାଜା
ମାଲକାନଗିରି ଆମର ରାଇଜ
ତାମା ଦୋରା ଆମ ରାଜା ।'

\+ + +

ବାହାର ହୋଇଲେ କୋଇଆ ଫଉଜ
ଦେଶର ମୁକ୍ତି ଲାଗି,
କୁରାଢ଼ି ଫାର୍ସା ଧନୁଶର ଧରି
ଦର୍ପେ ଉଠିଲେ ଜାଗି ।

\+ + +

ମୁହାଁ ମୁହିଁ ହେଲେ ଫିରିଂ ଫଉଜ
କୋଇୟା ଫଉଜ ଦଳ
ମୋଟୁ ଅଞ୍ଚଳ ଘନ ଜଙ୍ଗଲ
କମ୍ପିଲା ଥର ହର ।
ଶବରୀ ଯେଉଁଠି ସିଲେରୁ ଯେଉଁଠି
ଛାଡୁଛି ଭୀଷଣ ରଡ଼ି
ଘୋର ରଡ଼ି ଛାଡ଼ି ମାତିଲେ କୋଇଆ
ଜୀବନ ମୁର୍ଚ୍ଛା କରି ।

\+ + +

ବିଜୟ ଯୁଦ୍ଧ ହୋଇଅଛି ଏବେ
ଗୋରା ସେନାନୀର ପଦ୍ଧି,
କୋଇୟା ଜାତିର ବିପ୍ଳବୀ ନେତା
ତାମା ଦୋରା ଆଜି ବନ୍ଦୀ ।



# ବ୍ରିଟିଶ କଲେକ୍ଟରଙ୍କ ବିବରଣୀରେ ମାଲକାନଗିରି

ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ ପରିଗଣିତ ହେବାପରେ କୋରାପୁଟ ଏକ ନୂତନ ଜିଲ୍ଲା ଭାବେ ଗଠିତ ହୋଇଥିଲା । ମାଲକାନଗିରି କୋରାପୁଟରେ ଏକ ଅଂଗ ହୋଇଥିବାରୁ ଏହା ୧୯୩୬ ମସିହା ପୂର୍ବରୁ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିରେ ରହିଥିଲା । ବ୍ରିଟିଶ ଶାସନାଧିନ କୋରାପୁଟର ପ୍ରଥମ କଲେକ୍ଟର ଭାବେ ଆର୍‌.ସି.ଏସ.ବେଲ୍ ନିଯୁକ୍ତି ପାଇଥିଲେ । ସେ ୧୯୪୧ ମସିହାରେ ସମଗ୍ର କୋରାପୁଟ ବିଷୟରେ ଏକ ଐତିହାସିକ ରିପୋର୍ଟ ପ୍ରସ୍ତୁତ କରିଥିଲେ । ତାହାକୁ 'Gazzatteer of the Koraput Dist' ବୋଲି କୁହାଯାଏ । ବେଲ୍ ସାହେବ ସେଥିରେ ମାଲକାନଗିରି ବିଷୟରେ ଅନେକ ମହତ୍ତ୍ୱପୂର୍ଣ୍ଣ କଥା ଲେଖିଛନ୍ତି । ସେଥି ମଧ୍ୟରୁ କିଛି ଉଲ୍ଲେଖନୀୟ କଥା ଏଠାରେ ଲିପିବଦ୍ଧ କରାଯାଇଛି ।

୨,୨୮୮ ବର୍ଗ ମାଇଲ ବିଶିଷ୍ଟ ମାଲକାନଗିରି ଏକ ଘୋର ଜଙ୍ଗଲପୂର୍ଣ୍ଣ ତହସିଲ ଅଟେ । ଏହାର ମାଛକୁଣ୍ଡ ପାହାଡ଼ ଉପତ୍ୟକାରେ ବଣ୍ଡା, ଡିଡ଼ାୟି ଭଳି ଆଦିମ ଅଧିବାସୀମାନେ ବାସ କରନ୍ତି । ଏହି ତହସିଲରେ ଗୋବିନ୍ଦପାଲ୍ଲୀ, ମାଥିଲି, ପଡ଼ିଆ ଓ ମୋଟୁରେ ପ୍ରତି ବର୍ଗମାଇଲରେ ୩୯ ଜଣ ଲୋକ ବାସ କରନ୍ତି । ବାଲିମେଳା ଓ କୋଣ୍ଡାକାମେରୁରେ ବଣୁଆ ଜନ୍ତୁଙ୍କ ଆକ୍ରମଣରେ ସେଠାରେ ଗତ ୨୦ ବର୍ଷ ହେଲା ଜନଶୂନ୍ୟ ହେବାକୁ ଲାଗିଛି । ଏହି ଜନ୍ତୁମାନେ ଗୃହପାଳିତ ପଶୁ ଓ ଫସଲ ନଷ୍ଟ କରି ଦେଉଛନ୍ତି । ମାଲକାନଗିରି ଅଞ୍ଚଳ ଜଳବାୟୁ ଓ ଭୌଗଳିକ ଦୃଷ୍ଟି କୋଣରୁ ଦୁର୍ଭାଗ୍ୟପୂର୍ଣ୍ଣ ଅଟେ । ବର୍ଷା ଦିନରେ ବର୍ଷା ହୋଇ ବାହ୍ୟ ଜଗତରୁ ବିଚ୍ଛିନ୍ନ ହୋଇ ପଡୁଥିବା ବେଳେ ଖରାଦିନରେ ଏଠାରେ ଅସହ୍ୟ ଗରମ ଅନୁଭୂତ ହୋଇଥାଏ ଓ ପାନୀୟ ଜଳର ଘୋର

ଅଭାବ ଦେଖାଦିଏ । ମାଲେରିଆର ପ୍ରକୋପ ଏଠାରେ ଅଧିକ । ଏହାର ଉଚ୍ଚ ପାହାଡ଼ ଗୋଲିକୋଣ୍ଡା ଅଟେ ଯାହାକି ଡୁଡୁମା ଜଳପ୍ରପାତ ଠାରୁ ମାତ୍ର ୭ ମାଇଲ ଦୂରରେ ଅବସ୍ଥିତ । ଭେଙ୍କଟପଲାମଠାରେ ୧୦ ଫୁଟ ଉଚ୍ଚରେ ମୋଟା ଘାସରେ ଅନେକ ବର୍ଗମାଇଲ ସ୍ଥାନ ଅଚ୍ଛାଦିତ ହୋଇ ରହିଛି । ୧୯୧୧ ମସିହା ଜନଗଣନା ଅନୁସାରେ ଏହାର ଲୋକ ସଂଖ୍ୟା ବଢ଼ିଥିଲେ ସୁଦ୍ଧା ୧୯୧୯ ମସିହା ଇନ୍‌ଫ୍ଲୁଏଞ୍ଜା ରୋଗ ଯୋଗୁଁ ଏହା ବହୁତ କମି ଯାଇଥିଲା । ୧୯୨୧ ମସିହା ଠାରୁ ୧୯୩୧ ମସିହା ମଧ୍ୟରେ ଏହାର ଜନସଂଖ୍ୟା ଶତକଡ଼ା ୪୧.୯୦ ଭାଗ ବଢ଼ିଥିଲା । କୋୟା, ବଣ୍ଡା, ଭୂମିଆ, ପରଜା, ଡିଡ଼ାୟି, ମାଟିଆ, ଧାରୁଆ ବ୍ୟତୀତ ରଣା, ମାଳି ଓ ଗୌଡ଼ ଭଳି ପ୍ରାଚୀନ ଆଦିବାସୀ ସଂପ୍ରଦାୟର ଲୋକେ ଏଠାରେ ବସବାସ କରନ୍ତି । ୧୯୪୧ ମସିହାରେ ମାଲକାନଗିରିରେ କୋୟାମାନଙ୍କ ସଂଖ୍ୟା ଥିଲା ୨୭,୮୯୧, ଡିଡ଼ାୟି-୧,୬୬୧, ଧାରୁଆ ବା ଦୁରୁଆ-୨,୭୯୭ ଓ ବଣ୍ଡାମାନଙ୍କ ସଂଖ୍ୟା ଥିଲା-୨,୫୬୫, ବଣ୍ଡାମାନଙ୍କ କ୍ଷେତ୍ରରେ ଜନଗଣନା ଠିକ ଭାବେ ହୋଇ ପାରି ନଥିବା ହୃଦବୋଧ କରି ବେଲ୍ ସାହେବ କହିଛନ୍ତି ଯେ ଏହା ଦର୍ଶା ଯାଇଥିବା ସଂଖ୍ୟାର ପ୍ରାୟ ଦୁଇଗୁଣ ହେବ । ବଣ୍ଡା ଅଧିବାସୀମାନେ କିପରି ନିଜକୁ 'ରେ ମୋ' କହନ୍ତି ତାହା ଉଲ୍ଲେଖ କରି ଲେଖିଛନ୍ତି ଯେ-"The Bonda Porajas are certainly the wildest and rudest and possibly the most interesting tribe in the whole dist. Their name simply means 'naked people' but the men of the tribe call themselves by the appellation 'Remo'.

୧୮୩୬ ମସିହାରେ ପ୍ରଥମେ ମାନ୍ଦ୍ରାସ କମିଶନର ରୁସେଲଙ୍କ ଦ୍ୱାରା କନ୍ଧ ସମାଜରେ ହେଉଥିବା ନରବଳି କଥା ଜଣା ପଡ଼ିଥିଲା । ଅତୀତରେ ଏହା ବନ୍ଦ କରିବା ପାଇଁ ଅନେକ ପଦକ୍ଷେପ ନିଆ ଯାଇଥିଲା । କନ୍ଧ ସମାଜରେ ଉନ୍ନତି ପାଇଁ ଏହି ପ୍ରଥାକୁ ଜରୁରୀ ବୋଲି ସେମାନେ ଭାବୁଥିଲେ ଓ ଏଥିପାଇଁ ଟୁରା(ପୁରୁଷ) ଓ ଟୁରି(ସ୍ତ୍ରୀ) କୁ ବିଭିନ୍ନ ସମୟରେ ଖରିଦ କରି ଆଣୁଥିଲେ । ଗାଦବା ସଂପ୍ରଦାୟ ସହ ଡିଡ଼ାୟିମାନଙ୍କର ସାମାନ୍ୟ ସାମଞ୍ଜସ୍ୟ ରହିଥିବା କଥା ସେ ଅନୁଭବ କରିଛନ୍ତି । ସାଲିମି ନିକଟସ୍ଥ କୋୟାମାନେ ନିଜକୁ ଗଣ୍ଡିଆ ବୋଲି ପରିଚୟ ଦେଇଥାନ୍ତି । ୧୯୨୩ ମସିହା ଠାରୁ

ଏଠାକାର କୋୟା ଓ ପରଜା ଅଧିବାସୀମାନଙ୍କୁ ଆସାମ ଚାହା ବଗିଚାରେ କାମ କରିବାକୁ ପଠାଯାଉଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ପରେ ଫେରି ଆସିଥିଲେ । ୧୯୩୧ ମସିହାରେ ଏଠାରେ ଏକ ଜନଗୁଜବ ସୃଷ୍ଟି ହୋଇଥିଲା ଯେ ଦେବୀ କାଳୀ ଚାହିଁଥାନ୍ତି ବୋଲି କାଳିଆ ରଙ୍ଗର ଛେଳି, କୁକୁଡ଼ା ପ୍ରଭୃତି ଗୃହପାଳିତ ପଶୁକୁ ଖାଇଯିବେ । ସେତେବେଳେ ଲୋକେ ଏହି ରଙ୍ଗର ଯେତେ ଛେଳି ଓ କୁକୁଡ଼ା ଥିଲା ତାହା ମାରି ଖାଇ ଦେଲେ କିମ୍ବା ଅନ୍ୟକୁ ବିକ୍ରି କରି ଦେଇଥିଲେ ।

**ଶିକ୍ଷା :**

ଲୋକମାନେ ସେମାନଙ୍କର ପିଲାମାନଙ୍କୁ ବିଦ୍ୟାଳୟକୁ ପଠାଇବା ପାଇଁ କୁଣ୍ଠିତ ହେଉଥିଲେ । ସେମାନଙ୍କର ଧାରଣା ଥିଲା ଯେ ଏହାଦ୍ୱାରା ତାଙ୍କ ପିଲାମାନେ ଅଳସୁଆ ହୋଇଯିବେ । ସେ ଭବିଷ୍ୟତ ପାଇଁ ପ୍ରସ୍ତାବ ଦେଇଥିଲେ ଯେ ଏହି ସବୁ ଅଞ୍ଚଳରେ କେବଳ ଆବାସିକ ବିଦ୍ୟାଳୟ (ଆଶ୍ରମ ସ୍କୁଲ)ଗୁଡ଼ିକ ଶିକ୍ଷାଦାନ କ୍ଷେତ୍ରରେ ଉପଯୁକ୍ତ ସହାୟକ ହୋଇପାରିବ ।

**ସ୍ୱାସ୍ଥ୍ୟ :**

ସେତେବେଳେ କୋୟା ଲୋକମାନେ ୟାସ (yaws) ନାମକ ଏକ ରୋଗରେ ପୀଡ଼ିତ ହୋଇ ମୃତ୍ୟୁବରଣ କରୁଥିଲେ । ଏହାକୁ କୋୟାରୋଗ ବୋଲି ମଧ୍ୟ କୁହାଯାଉଥିଲା । ଏଥିରେ ପୀଡ଼ିତ ହେଉଥିବା ବ୍ୟକ୍ତିର ଦେହସାରା ଘା ହୋଇଯାଉଥିଲା । ବ୍ରିଟିଶ ଶାସନବେଳେ ୧୮୯୯ ମସିହାରେ ମାଲକାନଗିରିଠାରେ ଗୋଟିଏ ସାଧାରଣ ଚିକିତ୍ସାଳୟ ଖୋଲାଗଲା । ୧୯୨୩ ମସିହାରେ ମାଥିଲି ଓ ୧୯୨୭ ମସିହାରେ ଭେଙ୍କଟପାଲମଠାରେ ମଧ୍ୟ ଏକ ଚିକିତ୍ସାଳୟ ଖୋଲାଯାଇଥିଲା । ୧୯୪୧ ମସିହାରେ ମୋଟୁ ଠାରେ ଏକ ଚିକିତ୍ସାଳୟ କୋୟା ସଂପ୍ରଦାୟର ଲୋକଙ୍କ ପାଇଁ ଖୋଲାଯିବାକୁ ସେ ମନସ୍ଥ କରିଥିଲେ ।

**ରାସ୍ତାଘାଟ :**

୧୯୪୦ ମସିହାରେ ସରକାରଙ୍କ ପି.ଡବ୍ଲ୍ୟୁ.ଡି. କୁ ରାସ୍ତା ନିର୍ମାଣ ପାଇଁ କୁହାଯାଇଥିଲା । କୋଟା ଜଙ୍କସନ୍ ପାଖରେ ଜୟପୁର ମାଲକାନଗିରିକୁ

ଯୋଗ କରୁଥିବା ୨୦୭ ଫୁଟ ସେତୁ ୧୯୩୧ ମସିହାରେ ଟ୩,୬୯,୦୦୦.୦୦ଙ୍କା ବ୍ୟୟରେ ତିଆରି ହୋଇଥିଲା । ଏହାପରେ ହିଁ ଗାଡ଼ି ମୋଟର ଯିବା ଆସିବା ସୁବିଧାଜନକ ହୋଇପାରିଥିଲା ।

**କୃଷି ଓ ପଶୁପାଳନ :**

ବେଲଙ୍କ ରିପୋର୍ଟରୁ ଜାଣି ହୁଏ ଯେ ମାଲକାନଗିରିର ସୁ-ଉଚ୍ଚ ପାହାଡ଼ିଆ ଜାଗାରେ କନ୍ଧମାନେ ପୋଡୁ ଚାଷ କରି ଘରଦ୍ୱାର କରି ରହିବାକୁ ଭଲ ପାଉଥିଲେ । ଅନ୍ୟ ସଂପ୍ରଦାୟର ଲୋକେ ସମତଳ ଭୂମିରେ ଧାନ ଚାଷ କରୁଥିଲେ । ସମସ୍ତେ ପ୍ରାୟ ଗାଈ, ଗୋରୁ, ଛେଳି ଓ କୁକୁଡ଼ା ଇତ୍ୟାଦି ପାଳନ କରୁଥିଲେ ।

**ବ୍ୟବସାୟ :**

ପୂର୍ବକାଳ ଭଳି ଲୋକେ ବଦଳ କରି ଜିନିଷ କ୍ରୟ କରୁଥିଲେ । ସେତେବେଳେ ୧ ଭାଗ ଲୁଣ ପାଇଁ ୩ ଭାଗ ଚାଉଳ ମିଳୁଥିଲା । ଏହି ବଦଳ ପ୍ରଥା ଆଜିଯାଏଁ ବି ଚାଲି ଆସିଛି । (ବର୍ତ୍ତମାନ ଗାଁ ଗାଁ ବୁଲି କିଛି ଲୋକ ଏହାକୁ ଜୀବିକା ଭାବେ ଗ୍ରହଣ କରିଛନ୍ତି । ଆଜିକାଲିର ଏହି ବଦଳକୁ ଖେଜା କୁହାଯାଏ) । ମାଥିଲି ଓ ମୁଣ୍ଡିଗୁଡ଼ାରେ ଅନୁଷ୍ଠିତ ହେଉଥିବା ସାପ୍ତାହିକ ହାଟ ଅନ୍ୟ ହାଟମାନଙ୍କଠାରୁ ବଡ଼ ଥିଲା ।

୧୯୪୦ ମସିହା ବେଳକୁ ମାଲକାନଗିରିରୁ ମୂଲ୍ୟବାନ କାଠ ସବୁ ଆନ୍ଧ୍ରପ୍ରଦେଶର ରାଜମହେନ୍ଦ୍ରିକୁ ପଠାଯାଉଥିଲା । ସିଲେରୁ ଓ ସାବେରୀ ନଦୀକୁ ଏଥିପାଇଁ ମାଧ୍ୟମ କରାଯାଇ ମୋଟୁ ଠାରେ ଏହି ସବୁକୁ ଗୋଦାବରୀ ନଦୀରେ ଭସାଇ ଦିଆଯାଉଥିଲା । ଜଙ୍ଗଲରୁ କାଠ କାଟି ଅନ୍ୟ ସ୍ଥାନକୁ ପଠାଇବା ପାଇଁ ସଂସ୍ଥା ବା ବ୍ୟକ୍ତିବିଶେଷଙ୍କୁ ଅନୁମତି ମିଳୁଥିଲା ।

**ଖଜଣା ଆଦାୟ :**

କିଏ କେତେ ପରିମାଣରେ ଜମି ଚାଷ କରିବ ତାହା ଜାଣି ହେଉ ନ ଥିବା ଯୋଗୁଁ ୧୯୩୯-୪୦ ମସିହା ବେଳକୁ ଜମି ଉପରେ ନୁହେଁ ଲଙ୍ଗଳ ଓ ମାଟି ହାଣିବା ଫାଉଡ଼ା ଉପରେ କର ବସା ଯାଉଥିଲା । ପ୍ରତି ଲଙ୍ଗଳ ପିଛା

ଦୁଇ ଅଣାରୁ ଛ'ଅ ଅଣା ଓ ଫାଉଡ଼ା ପିଛା ଚାରି ଅଣାରୁ ଆଠ ଅଣା କରି ବାର୍ଷିକ କର ଦେବାକୁ ପଡୁଥିଲା । ଜମି ନିଜେ କିମ୍ବା ଅନ୍ୟ ଦ୍ୱାରା ଚାଷ କରାଯାଉଥିଲା । ଶ୍ରମିକମାନଙ୍କୁ ଦୈନିକ ଦୁଇଅଣା ମଜୁରି ମିଳୁଥିଲା । ଏଥିପାଇଁ ସେମାନେ ୬ ଘଣ୍ଟା ପରିଶ୍ରମ କରୁଥିଲେ । ଯେଉଁ ସବୁ ସମତଳ ଜମିରେ ଭଲ ଧାନ ହେଉଥିଲା ସେଠାରେ ଶସ୍ୟ ଆକାରରେ ଖଜଣା ଆଦାୟ ହେଉଥିଲା କିମ୍ବା ଗୋଟିଏ ଏକର ପାଇଁ ବାର୍ଷିକ ୧ ୨ ଅଣାରୁ ୧ ୪ ଅଣା ଖଜଣା ଦେବାକୁ ପଡୁଥିଲା ଯାହାକି ରାୟଗଡ଼ା ଠାରୁ ବହୁତ କମ୍ ଥିଲା ।

**ଜଙ୍ଗଲ ଓ ବନ୍ୟଜନ୍ତୁ :**

ଏଠାକାର ଜଙ୍ଗଲରେ ଭଲ ଶାଳ କାଠ ଦେଖିବାକୁ ମିଳେ । କ୍ଷମତା ପ୍ରାପ୍ତ ବ୍ୟକ୍ତି ଏଠାରୁ ଗଛ କାଟି ଜଳ ପଥରେ ଆନ୍ଧ୍ରକୁ ପଠାଉଥିଲେ । ସାବେରୀ ଓ ସିଲେରୁ ନଦୀରେ ଏହାକୁ ଅବରୋଧ କରୁଥିବା ପଥରକୁ ଫଟାଯାଇ ରାସ୍ତା ସଫା କରାଯାଉଥିଲା । ବିଭିନ୍ନ ରଙ୍ଗବେରଙ୍ଗ ପକ୍ଷୀ ଏଠାରେ ଦେଖିବାକୁ ମିଳୁଥିଲା । ବାଘ,ଭାଲୁ ବ୍ୟତୀତ ଅସଂଖ୍ୟ ବଣମହିଷ, ଗୟଳ, ହରିଣ, ସମ୍ବର, ଚିତ୍ରାହରିଣ, ବରାହ, ବଳିଆକୁକୁର, ଓ ନୀଳ ଗାଇ ଏହି ଅଞ୍ଚଳରେ ଦେଖାଯାଉଥିଲେ । ଏହି ସବୁ ଜୀବଜନ୍ତୁ କୋଣ୍ଡାକାମେରୁ ଜଙ୍ଗଲରେ ସଂଖ୍ୟାଧିକ ଭାବେ ବାସ କରୁଥିଲେ । ୧୩୩ ବର୍ଗମାଇଲ ବିଶିଷ୍ଟ କୋଣ୍ଡାକାମେରୁ ଜଙ୍ଗଲ (ଯାହାକି ବର୍ତ୍ତମାନ ଚିତ୍ରକୋଣ୍ଡା ଜଳଭଣ୍ଡାରରେ ବୁଡ଼ି ଯାଇଛି )୧୯୦୭ ମସିହାରେ ସରକାରଙ୍କ ଦ୍ୱାରା ସଂରକ୍ଷିତ ଜଙ୍ଗଲ ଭାବେ ପରିଗଣିତ ହୋଇଥିଲା । ସିଲେରୁ ଓ ସାବେରୀ ନଦୀମାନଙ୍କରେ ସାଧାରଣ ଭାରତୀୟ କୁମ୍ଭୀର ଦେଖାଯାଉଥିଲେ । ଘଡ଼ିଆଳ କୁମ୍ଭୀର ଏଠାରେ ନଥିଲେ । କିୟାଙ୍ଗ ନିକଟରେ ଗଚ୍ଛିତ ଥିବା ସୁନା ଖଣି ରଙ୍ଗପାଣିନକା ଓ ପାଖାପାଖି ଅଞ୍ଚଳରୁ ସାବେରୀ ନଦୀରେ ଧୋଇ ହୋଇ ଯାଉଥିବା କଥା ସେ ଉଲ୍ଲେଖ କରିଛନ୍ତି । ତୁଳସୀ ପାହାଡ଼ ନିକଟରେ ନୀଳ ପଥର ଗଚ୍ଛିତ ଥିବାର ସେ ଦର୍ଶାଇଛନ୍ତି ।

କଲେକ୍ଟର ବେଲ୍ ଜଣେ ଦକ୍ଷ ପ୍ରଶାସକ ଥିଲେ । ମାଲକାନଗିରି ବିଷୟରେ ଗଭୀର ଭାବେ ଅନୁଧ୍ୟାନ କରିପାରିଥିଲେ ଓ ଯଥା ସମ୍ଭବ ଏହାର ଉନ୍ନତି ପାଇଁ ଚେଷ୍ଟିତ ଥିଲେ । ଅନ୍ୟ ଜଣେ ଇଂରେଜ ଗବେଷକ

ଡଃ ଭେରିଏର ଏଲଓ୍ୱିନ ଯିଏକି ଆଦିମ ଅଧିବାସୀଙ୍କ ଉପରେ ଅଧିକ ଗବେଷଣା କରି ବିଶ୍ୱ ଦରବାରରେ ସୁପରିଚିତ ହେବା ସହିତ ୧୯୬୧ ମସିହାରେ ଭାରତ ଭୂଷଣ ଉପାଧି ପାଇଥିଲେ । ସେ ମଧ୍ୟ ଏହି ଅଞ୍ଚଳ ବୁଲି ଏହାର ବିକାଶ ପାଇଁ ଏକ ରିପୋର୍ଟ ତିଆରି କରିଥିଲେ । ଏଠାକାର ଅଧିବାସୀଙ୍କ ସେବା କାର୍ଯ୍ୟରେ ନିଯୁକ୍ତ କର୍ମଚାରୀଙ୍କ ଉଦ୍ଦେଶ୍ୟରେ ସେ କହିଥିଲେ -''ମୁଁ ସାରା ଭାରତ ବୁଲି ଗୋଟିଏ କଥା ଅନୁଭବ କରିଛି ଯେ ଆଦିବାସୀ ଅଞ୍ଚଳରେ କାର୍ଯ୍ୟରତ ସମସ୍ତେ ସବୁବେଳେ କେବେ ବଦଳି ହୋଇ ଚାଲିଯିବେ ବୋଲି ଭାବିଥାନ୍ତି । ଏହି ସବୁ ଅଞ୍ଚଳରେ କାମ କରିବା ଏକ ସମ୍ମାନୀୟ କଥା ଭାବେ ଉଲ୍ଲେଖ କରି ଲେଖିଛନ୍ତି ଯେ :" I have rarely found the feeling that it is an honourable thing to be posted on the frontiers of civilization, that here are people worth helping and even worth studying and understand. ❖❖❖

# ମାଲକାନଗିରିର ପ୍ରଧାନ ଉତ୍ସବ ବଡ଼ଯାତ୍ରା



(ବଡ଼ ଠାକୁରଙ୍କର ଛବି)

ପ୍ରତି ଦୁଇ ବର୍ଷରେ ଅନୁଷ୍ଠିତ ହେଉଥିବା ଏହି ଯାତ୍ରା ମୁଖ୍ୟତଃ କୋୟା ସଂପ୍ରଦାୟର ଆଦି ପର୍ବ ଅଟେ । ପ୍ରଭୁ କାନାମ ରାଜୁ (କୃଷ୍ଣ), ବାଇା ରାଜୁ (ଅର୍ଜୁନ), ଓ ପୋତୁ ରାଜୁ (ଭୀମ)ଙ୍କ ସହ ମୁତ୍ୟାଲାମା (ଠାକୁରାଣୀ) ମାନ୍ୟମକୋଣ୍ଡାରୁ ବାହାରି ମାଲକାନଗିରିରେ ପହଁଞ୍ଚିବା ପର୍ଯ୍ୟନ୍ତ ଯାତ୍ରାକୁ ବଡ଼ଯାତ୍ରା କୁହାଯାଏ । ଫଗୁଣ ମାସର ପ୍ରଥମ ସପ୍ତାହରେ ପଡୁଥିବା ଏହି ଯାତ୍ରାରେ ବାଘଁଣ ଦେହରେ ଦେବତାଙ୍କ ଆର୍ବିଭାବ କରାଇ ପୂଜା କରିବାର

ବ୍ୟବସ୍ଥା ରହିଛି । ଏହି ତିନି ଠାକୁରଙ୍କ ପ୍ରତିମାକୁ ବାଉଁଶ ଗଚ୍ଛାରେ ମୟୁର ପୁଚ୍ଛ ଯୋଡ଼ି ତିଆରି କରାଯାଇଥାଏ । କେଉଁ ଆବାହମାନ କାଳରୁ ପାଳିତ ହୋଇ ଆସୁଥିବା ଏହି ପର୍ବରେ କିଛି ପ୍ରାଚୀନ ନିୟମ ମାନିବା ଉପରେ ଗୁରୁତ୍ୱ ପ୍ରଦାନ କରାଯାଏ ।

ବଡ଼ ଠାକୁରଙ୍କ ଯାତ୍ରାରେ ପ୍ରତ୍ୟେକ ଗ୍ରାମରୁ ଗାଁର ଦେବାଦେବୀମାନେ ପ୍ରତିନିଧିତ୍ୱ କରିଥାନ୍ତି । ଯାତ୍ରା ସମୟରେ ଅଧା ରାସ୍ତାରେ ବା ମାଲକାନଗିରି ଠାରେ ବଡ଼ ଠାକୁରଙ୍କ ସହ ଅନ୍ୟାନ୍ୟ ଦେବତାମାନଙ୍କର ମହା ଭେଟ ହୋଇଥାଏ । ବଡ଼ ବଡ଼ ବାଉଁଶ ଲାଠିକୁ ଦୈବୀ ବସ୍ତ୍ର, କଉଡ଼ି, ଝୁମୁକା ଓ ମୟୁରପୁଚ୍ଛରେ ସଜ୍ଜିତ କରାଯାଇଥାଏ । ମହୁରୀ, ବାଜା ଓ ଘଣ୍ଟ ଧ୍ୱନୀ ସହ ନିଜ ନିଜ ଗ୍ରାମରୁ ଶିରା, ଓ୍ୱାଡେ ଓ ପୂଜେର (ଦୈବୀ ପୂଜା ସହ ସଂପୃକ୍ତ ବ୍ୟକ୍ତିମାନେ) ସହ ଅନ୍ୟମାନେ ବି ସାଙ୍ଗରେ ଆସନ୍ତି । ମାନ୍ୟମକୋଣ୍ଡା ପାହାଡ଼ରୁ ଆରମ୍ଭ ହେଉଥିବା ଯାତ୍ରା ପାଇଁ ଭକ୍ତମାନେ ଠାକୁରଙ୍କୁ ପାଛୋଟି ଆଣିବା ଉଦ୍ଦେଶ୍ୟରେ ଫଗୁଣ ମାସର ପ୍ରଥମ ବୁଧବାର ଦିନ ବାହାରି ପଡ଼ନ୍ତି । ମାଲକାନଗିରି ଠାରୁ ବାହାରିବା, ପ୍ରତିମା ନିର୍ମାଣ ଓ ପୁରାତନ ପ୍ରତିମା ବିସର୍ଜନ ଇତ୍ୟାଦି କାମ ପାଇଁ ସେମାନଙ୍କୁ ୨୧ ଦିନ କାଳ ସମୟ ଲାଗିଥାଏ । ମାନ୍ୟମକୋଣ୍ଡାଠାରେ ପ୍ରାଥମିକ ପର୍ଯ୍ୟାୟରେ ଯେଉଁ କେତେକ ପ୍ରଥା ପାଳନ କରାଯାଇଥାଏ ସେଗୁଡ଼ିକ ହେଲା ।

**ବାଇସା ଛପର :** ମାଲକାନଗିରିରୁ ଯାଇ ୬ଷ୍ଠ ଦିବସରେ ମାନ୍ୟମକୋଣ୍ଡାସ୍ଥିତ ମୁତ୍ୟାଲୁମା ମନ୍ଦିର ପାଖରେ ଏକ ଅସ୍ଥାୟୀ ତାଳପତ୍ର ଛପର ଘର ନିର୍ମିତ ହୋଇଥାଏ ।

**ତେଲ ପେଡ଼ା :** ଏହି ଅବସରରେ ସେମାନେ ଠାକୁରଙ୍କ ପାଇଁ ଧୂପ, ଦୀପ, ମାଟିପାତ୍ର ଓ ନୈବେଦ୍ୟ ଯୋଗାଡ଼ କରିଥାନ୍ତି । ବିଶେଷ କରି ବଡ଼ ଠାକୁରଙ୍କ ପାଇଁ ଆବଶ୍ୟକ ହେଉଥିବା ତେଲକୁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରାଯାଏ ।

**ବାଉଁଶ ମରା :** ଅଷ୍ଟମ ଦିବସରେ ସାଡ଼ବାନପାଲ୍ଲୀ ଗ୍ରାମରେ ଥିବା

ନିର୍ଦ୍ଦିଷ୍ଟ ଅଞ୍ଚଳରୁ ତିନି ଠାକୁରଙ୍କ ପାଇଁ ବାଉଁଶ ପିଲ
ସଂଗ୍ରହ କରାଯାଇଥାଏ ।

**ଡଙ୍ଗା ମରା :** ପୋଲୁରୁ ଗାଁରେ ନଈ ପାରି ହେବା ପାଇଁ ବାଉଁଶ ଟାଟ ଲଗା ଡଙ୍ଗା ତିଆରି କରାଯାଏ ।

**ଢାଲଚିରା** ମୟୁର ପୁଛକୁ ପ୍ରତିମା ନିର୍ମାଣ ପାଇଁ ସଂଗ୍ରହ ଓ ପସ୍ତୁତ କରାଯାଏ । ପୂର୍ବେ ମନ୍ତ୍ର ଓ ଚାଉଳ ଫିଙ୍ଗି ଦେଲେ ମୟୁରମାନେ ଆସି ନିଜ ପୁଚ୍ଛରୁ କିଛି ଦାନ କରି ଚାଲିଯାଉଥିଲେ ।

**ପ୍ରତିମା ନିର୍ମାଣ :** ଏକାଦଶ ଦିନ ପ୍ରତିମା ନିର୍ମାଣ କାମ ଆରମ୍ଭ ହୋଇଯାଇଥାଏ । ଦୈନିକ ଗୋଟିଏ କରି ପ୍ରତିମା ନିର୍ମାଣ କରାଯାଏ । ବାଉଁଶ ପିଲରେ ମୟୁରପୁଚ୍ଛ ଆବୃତ କରି ଏହାକୁ ତିଆରି କରାଯାଏ ।



ବଡ଼ଯାତ୍ରାର ଏକ ଦୃଶ୍ୟ



ବଡ଼ଯାତ୍ରା ବେଳେ ମାଣ୍ଡିଆଭଟାର ଏକ ଦୃଶ୍ୟ

**ବଳିଭାତ :** ପ୍ରତିମା ନିର୍ମାଣ ସରିବା ପରେ ପଶୁ କିମ୍ବା ପକ୍ଷୀ ବଳିର ରକ୍ତ ମିଶା ଅନ୍ନ ଭୋଗ ଲଗାଯାଏ ।

**ପୋଲୁରୁ ତାଡ଼କାପୋଖରୀରେ ସ୍ନାନ:**

ରାମଚନ୍ଦ୍ର ଏଠାରେ ତାଡ଼କା ଅସୁରକୁ ମାରିଥିବା ଯୋଗୁଁ ଏହି ସ୍ଥାନକୁ ତାଡ଼କା କୁହାଯାଏ । ଏଠାରେ ଥିବା ପୋଖରୀରେ ସ୍ନାନ କଲେ ପୁଣ୍ୟ ମିଳେ ବୋଲି ଲୋକବିଶ୍ୱାସ ରହିଛି । ପୁରୁଣା ମୂର୍ତ୍ତିକୁ ବିସର୍ଜନ କରାଯାଇ ନବକଳେବରକୁ ସ୍ନାନ କରାଯାଏ । ଏହା ପରେ ମାନ୍ୟମକୋଣ୍ଡାକୁ ପୁଣି ସମସ୍ତେ ଫେରି ଆସନ୍ତି ।

ଏହାର ପରବର୍ତ୍ତି ଆଠ ଦିନ ପ୍ରକୃତ ଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ଅବସରରେ ତିନିଠାକୁର ମାନ୍ୟମକୋଣ୍ଡାରୁ ବାହାରି ମାଲକାନଗିରିସ୍ଥ ମାଉଳି

ମନ୍ଦରି ପ୍ରାଙ୍ଗଣକୁ ଯାଇ ସେଠାରେ ତିନି ରାତ୍ର ଅବସ୍ଥାନ କରନ୍ତି । ନବମ ଦିନ ବ୍ରାହ୍ମ ମୁହୂର୍ତ୍ତରୁ ଏମାନଙ୍କୁ ବିଦାୟ ଦିଆଯାଏ । ବଡ଼ଯାତ୍ରାର କାର୍ଯ୍ୟକ୍ରମ ନିମ୍ନ ପ୍ରକାରେ ଅନୁଷ୍ଠିତ ହୋଇଥାଏ ।

ପ୍ରଥମ ଦିନ : ମାନ୍ୟମକୋଣ୍ଡାରେ ପ୍ରଥମ ଅନ୍ନ ଭୋଗ ଓ ଯାତ୍ରା ।

ଦ୍ୱିତୀୟ ଦିନ : ମାୟମକୋଣ୍ଡାଠାରୁ ଗୁବଲେରୁ ଦେଇ କାଲିମେଲା ଯାତ୍ରା ଓ ରହଣୀ ।

ତୃତୀୟ ଦିନ : କାଲିମେଲା ଠାରୁ କାଙ୍କୁରୁକୋଣ୍ଡା ଯାତ୍ରା ଓ ରହଣୀ ।

ଚତୁର୍ଥ ଦିନ : ସକାଳେ ପୋଟେରୁ, ଦିବା ଖିଖପାଲ୍ଲୀ ଓ ସଂଧ୍ୟାରେ ତମସା ଯାତ୍ରା ଓ ରହଣୀ ।

ପଞ୍ଚମ ଦିନ : ସକାଳେ ମାଲକାନଗିରି ସହରର ଉପକଣ୍ଠରେ ଥିବା କନ୍ୟାମାଝି ବନ୍ଧ ଓ ସନ୍ଧ୍ୟାରେ ମଣ୍ଡିଆ ଭଟା ଯାତ୍ରା ଓ ରହଣୀ ।

ଷଷ୍ଠ ଦିନ : ମାଣ୍ଡିଆଭଟାରୁ ମାଉଲି ମନ୍ଦିରକୁ ଯାତ୍ରା ଓ ରହଣୀ ।

ସପ୍ତମ ଦିନ : ମାଉଲି ମନ୍ଦିର ପଡ଼ିଆରେ ଯାତ୍ରା ଓ ରହଣୀ ।

ଅଷ୍ଟମ ଦିନ : ଶେଷ ଅନ୍ନ ଭୋଗ- ରାତ୍ର ୧ ୨ ଘଟିକା ସମୟରେ ପ୍ରଦାନ ।

ନବମ ଦିନ : ପ୍ରାତଃ ଦେବାଦେବୀଙ୍କୁ ବିଦାୟ ।

ଯାତ୍ରା ସମୟରେ ମାଲକାନ୍‌ଗିରି ସହରର ଉପରୋକ୍ତ ତିନୋଟି ସ୍ଥାନରେ ଠାକୁର ଅବସ୍ଥାନ କରିଥାନ୍ତି । ସହରାଞ୍ଚଳର ଉପକଣ୍ଠରେ ଥିବା କନ୍ୟାମାଝି (ସ୍ୱର୍ଗତ କନ୍ୟା ମାଝିଙ୍କର ପୋଖରୀ) ନିକଟରେ ପ୍ରଥମ ରହଣୀ ହେବା ପରେ ମାଣ୍ଡିଆଭଟାରେ (ଅତୀତରେ ଏହି ପଡ଼ିଆରେ ମାଣ୍ଡିଆ ଚାଷ କରାଯାଉଥିଲା) ରହିଥାନ୍ତି । ପରେ ମାଉଲି ମନ୍ଦିର ବଡ଼ଯାତ୍ରା ପଡ଼ିଆରେ ତିନିରାତ୍ର କଟାଇ ବିଦାୟ ନିଅନ୍ତି । ଆନନ୍ଦ ଉଲ୍ଲାସ ତଥା ପ୍ରବଳ ଜନସମାଗମରେ ଏହା ପାଳିତ ହୋଇଥାଏ । ଅନେକ ପୂର୍ବରୁ କରିଥିବା ମାନସିକ ଅନୁସାରେ ଭକ୍ତମାନେ ଭୋଗ ଲଗାଇଥାନ୍ତି । ଏହା ଏକ ଆଦିବାସୀ ପର୍ବ ହୋଇଥିବାରୁ ପଶୁ ବଳି ପ୍ରଥାର ବ୍ୟବସ୍ଥା ରହି ଆସିଛି । ପରବର୍ତ୍ତୀ ସମୟରେ ମଧ ଏହା ପରିବର୍ତ୍ତିତ ହୋଇ ପାରିନାହିଁ । ଅବଶ୍ୟ ବଳି ପ୍ରଥା



**ବଡ଼ଯାତ୍ରାର ଏକ ଦୃଶ୍ୟ**

ଏକ ନିନ୍ଦନୀୟ କାର୍ଯ୍ୟ ହୋଇଥିବାରୁ ଏଥିପାଇଁ ସଂସ୍କାର ଅଣାଯିବାର ଆବଶ୍ୟକତା ରହିଛି ।

ଯେଉଁ ଭଳି ଏଠାକାର ବଣ୍ଡାରମଣୀଙ୍କ ଅର୍ଦ୍ଧ ଉଲଗ୍ନ ଶରୀର ଓ ଲଣ୍ଡିତ ମୁଣ୍ଡ ସହ ରାମାୟଣ ଯୁଗର ଦେବୀ ସୀତାଙ୍କ ସ୍ନାନ ଓ ଅଭିଶାପ କଥାକୁ ଯୋଡ଼ା ଯାଇ କିମ୍ବଦନ୍ତୀ ସୃଷ୍ଟି ହୋଇଛି । ସେହିପରି ମହାଭାରତର ପାଣ୍ଡବମାନଙ୍କ ରାଜୁତି ସମୟର ଜରାସନ୍ଧ ବଧ ଓ ଯାଜ୍ଞସେନୀଙ୍କୁ କ୍ଷତିପୂରଣ ବାବଦରେ ଲକ୍ଷେ ବଳି ଭୋଗ ଦେବାପାଇଁ କୃଷ୍ଣ, ଅର୍ଜୁନ ଓ ଭୀମଙ୍କର ତାଙ୍କ ସହ ଯାତ୍ରାକୁ ଏହି ପର୍ବର କାରଣ ଭାବେ କେହି କେହି ମତ ବ୍ୟକ୍ତ କରିଥାନ୍ତି । ଅଧିକ ଅନୁଧ୍ୟାନ କଲେ କେବଳ ଏତିକି ଜାଣି ହୁଏ ଯେ କେତେକ ପୌରାଣିକ କଥାରେ ପ୍ରଭାବିତ ହୋଇ ଏହି ସରଳ ଆଦିବାସୀମାନେ ନିଜସ୍ୱ ଢଙ୍ଗରେ କେଉଁ ଆବାହମାନ କାଳରୁ ଏହି ଯାତ୍ରା ଆୟୋଜନ କରିଆସୁଛନ୍ତି ।

ଯାତ୍ରାରେ ଦେିବୀ-ବାଉଁଶ ଲାଠି ବୋହି ନେଉଥିବା ବ୍ୟକ୍ତି ଉପରେ ଦେବତା ପ୍ରସନ୍ନ ହୋଇଥାନ୍ତି । ତେଣୁ, ସେ ସେଥିରେ ତନ୍ମୟ ହୋଇ ମୁଣ୍ଡ

ଦେହ ହଲାଇ ଲାଠିକୁ ଥରାଇ ବାଜାର ତାଳେ ତାଳେ ନାଚିଥାଏ । ତାଙ୍କୁ ନିର୍ଦ୍ଦିଷ୍ଟ ଦୈବୀ ପୋଷାକ ପରିଧାନ କରିବା ସହ ମୟୁର ପୁଚ୍ଛ ବିଡ଼ାଏ ହାତରେ ଧରିବାକୁ ହୋଇଥାଏ । ଝୁଣା ଧୂପକୁ ଆଘ୍ରାଣ କରି ସାରିବା ପରେ ହିଁ ଦେହରେ ଦୈବୀ ଶକ୍ତି ପ୍ରବେଶ କରେ ଓ ବାଜା ବାଜିବା ପରେ ନୃତ୍ୟ କରିବା ଆରମ୍ଭ ହୋଇଯାଏ । ଯେଉଁ ଲାଠି ଯେତେ ଓଜନ ଓ ଲମ୍ବ ସେଥିରେ ବିରାଜମାନ ଦେବତା ସେତିକି ତାଗଡ଼ା ଓ କ୍ରୋଧୀ ବୋଲି ଧରାଯାଏ । ମାଥିଲି ନିକଟସ୍ଥ ଚେଡ଼େଙ୍ଗା ଗ୍ରାମରୁ ଆସିଥିବା ବିରାଟକାୟ ଲାଠିକୁ ସବୁଠାରୁ ଶ୍ରେଷ୍ଠ ଲାଠି ଭାବେ ପୂର୍ବରୁ ମାନ୍ୟତା ଦିଆଯାଇଛି । ସାଙ୍ଗରେ ନେଇଥିବା କଣ୍ଟା ଆସନରେ ବସିବା, କଣ୍ଟା ଚାବୁକରେ ବା ଲୁହା ଶିକୁଳିରେ ପିଠିରେ ପିଟି ହେବା ଇତ୍ୟାଦି ଦୃଶ୍ୟ ଏହି ଯାତ୍ରା ସମୟରେ ଦେଖିବାକୁ ମିଳେ । ମନ୍ତ୍ର ଚାଉଳ ନଖାଇଲେ ପଶୁ କିମ୍ବା ପକ୍ଷୀକୁ ବଳି ଦିଆଯାଏ ନାହିଁ । ଯାତ୍ରା ସମୟରେ ପାଇକ ପୋଷାକରେ କାଠ ଘୋଡ଼ାରେ ଚଢ଼ି ନୃତ୍ୟରତ ଆଦିବାସୀ ଯୁବକଯୁବତୀମାନେ ବାଟ କଡ଼ାଇ ଠାକୁରଙ୍କୁ ଆଗକୁ ନେଇଥାନ୍ତି । ମାଲକାନଗିରି ଜିଲ୍ଲାର ସମସ୍ତ ସଂପ୍ରଦାୟର ଆଦିବାସୀ ଏହାକୁ ମାନନ୍ତି । ଦୂରଦୂରାନ୍ତରୁ ମଧ୍ୟ ଲୋକମାନେ ଆସି ଏହି ଯାତ୍ରା ଦେଖି ଆନନ୍ଦ ଉପଭୋଗ କରିଥାନ୍ତି । ❖❖❖

# ଅନ୍ୟାନ୍ୟ ପର୍ବ ପର୍ବାଣୀ

ପ୍ରତି ବର୍ଷ ପଟ୍ଟେରୁ ଗ୍ରାମସ୍ଥ ହରିଚାନ୍ଦ ବାବା ଓ ନରନାରାୟଣ ସେବାଶ୍ରମ୍ ତରଫରୁ ଫାଲଗୁନ ପୂର୍ଣ୍ଣିମାରେ ତିନି ଦିନ ବ୍ୟାପି ଏକ ବଡ଼ ଧରଣର ଯାତ୍ରା ଅନୁଷ୍ଠିତ ହୋଇଥାଏ । ପଟ୍ଟେରୁ ନଦୀ କୂଳରେ ହେଉଥିବା ଏହି ପର୍ବ ବଙ୍ଗାଳିମାନଙ୍କର ଏକ ବିଶିଷ୍ଟ ସମୂହ ପର୍ବ । ଏହା ବ୍ୟତୀତ ଏମ୍.ଭି.-୭ ଗ୍ରାମରେ ଥିବା କାଶୀ କୃଷ୍ଣ ଆଶ୍ରମ ତରଫରୁ ମଧ୍ୟ ଉକ୍ତ ଦିନ ଯାତ୍ରା ଅନୁଷ୍ଠିତ ହୋଇଥାଏ । ମାଘ ପୂର୍ଣ୍ଣିମା ଦିନ ଏମ୍. ଭି-୩ ଗ୍ରାମର ଗୌର ଗୋବିନ୍ଦ ଆଶ୍ରମରେ ଅଷ୍ଟ ପ୍ରହର ନାମଯଜ୍ଞକୁ ସ୍ଥାନୀୟ ବଙ୍ଗାଳିମାନେ ତଥା ଅନ୍ୟ ସମସ୍ତେ ବେଶ ଉପଭୋଗ କରନ୍ତି । ଏହି ସବୁ ଉତ୍ସବମାନଙ୍କରେ ପ୍ରବଳ ଜନସମାଗମ ହୋଇଥାଏ । ହରିକୀର୍ତ୍ତନ ବ୍ୟତୀତ ବଙ୍ଗାଳି ଯାତ୍ରା ଓ ପାଲା ଏହି ସବୁ ଉତ୍ସବର ମୁଖ୍ୟ ଆକର୍ଷଣ । ଏଥି ପାଇଁ ବାହାରୁ କଳାକାରମାନଙ୍କୁ ଅଣା ଯାଇଥାଏ । ଏହା ଦେଖିବାକୁ ବା ଭାଗ ନେବାକୁ ଆସୁଥିବା ଦର୍ଶକ କିମ୍ବା ଭକ୍ତମାନଙ୍କ ପାଇଁ ମାଗଣାରେ ରହିବା ଓ ଅନ୍ନ ପ୍ରସାଦର ବ୍ୟବସ୍ଥା କରାଯାଇଥାଏ ।

ହରିଚାନ୍ଦ ବାବା ଆଶ୍ରମର ମୁଖ୍ୟ କାର୍ଯ୍ୟାଳୟ ବଙ୍ଗଳାଦେଶରେ ଅବସ୍ଥିତ । ଏହି ଅନୁଷ୍ଠାନ ତରଫରୁ ପରିଚାଳିତ ହେଉଥିବା ପୂଜା ଓ ଯାତ୍ରାରେ ବଙ୍ଗଳାଦେଶର ସାଂସ୍କୃତିକ ଛବି ପ୍ରତିଫଳିତ ହୋଇଥାଏ । କାଶୀ କୃଷ୍ଣ ଆଶ୍ରମ ଓ ଗୌରଗୋବିନ୍ଦ ଆଶ୍ରମର ମୁଖ୍ୟ କାର୍ଯ୍ୟାଳୟ ପଶ୍ଚିମବଙ୍ଗରେ ଅବସ୍ଥିତ । ଏହି ସବୁ ଉତ୍ସବର ଲୋକପ୍ରିୟତା ଦିନକୁ ଦିନ ବଢ଼ିବାରେ ଲାଗିଛି । ❖❖❖

# ସଂକ୍ଷେପରେ ମାଲକାନଗିରି

ମାଲକାନଗିରି ଜିଲ୍ଲା ଓଡ଼ିଶାର ଦକ୍ଷିଣ କୋଣରେ ୧୭°-୪୫' ଉତ୍ତର ଠାରୁ ୧୮°-୨୦' ପୂର୍ବ ଦ୍ରାଘିମାରେ ଅବସ୍ଥିତ । ମଧ୍ୟପ୍ରଦେଶ ଏହାର ଉତ୍ତର-ପଶ୍ଚିମରେ ଏବଂ ଆନ୍ଧ୍ରପ୍ରଦେଶ ଦକ୍ଷିଣ ପୂର୍ବ ଦିଗରେ ରହିବା ସହିତ କୋରାପୁଟ ଜିଲ୍ଲା ଏହାର ପୂର୍ବ ଦିଗରେ ରହିଛି ।

**ଜଳବାୟୁ :**

ଏହି ଜିଲ୍ଲା ଓଡ଼ିଶାର ପୂର୍ବଘାଟ ମୌସୁମୀ ଜଳବାୟୁର ଅନ୍ତର୍ଗତ । ଗ୍ରୀଷ୍ମଦିନେ ଏହି ଜିଲ୍ଲାରେ ଅଧିକ ଗରମ ଅନୁଭୂତ ହୁଏ ।

**ଭୌଗଳିକ ଅଞ୍ଚଳ :**

| | | |
|---|---|---|
| ୧ ॥ | ଭୌଗଳିକ ସୀମାରେଖା | ୬,୨୫,୯୧୪ ହେକ୍ଟର |
| ୨ ॥ | ଜଙ୍ଗଲ, ପାହାଡ଼ ଓ ଜଳ ଅଞ୍ଚଳ | ୩,୧୩,୬୨୮ ହେକ୍ଟର |
| ୩ ॥ | ଗଛ ପତ୍ର ଓ ଛୋଟିଆ ବଣ | ୧୨,୨୩୨ ହେକ୍ଟର |
| ୪ ॥ | ସ୍ଥାୟୀ ଗୋ ଚାରଣ ଭୂମି | ୩୦,୨୭୨ ହେକ୍ଟର |
| ୫ ॥ | ଚାଷ ଉପଯୋଗୀ ଅନାବାଦୀ ଭୂମି : | ୨୫,୨୦୭ ହେକ୍ଟର |
| ୬ ॥ | ଯେଉଁ ଅଞ୍ଚଳ ଚାଷ ପାଇଁ ନୁହେଁ | ୬୧,୧୮୪ ହେକ୍ଟର |
| ୭ ॥ | ଉତ୍ପାଦିକା ଶକ୍ତି ବିହୀନ ଚାଷ ଅନୁପଯୋଗୀ : | ୫୫,୦୩୭ ହେକ୍ଟର |
| ୮ ॥ | ପ୍ରକୃତ ଚାଷ କରାଯାଉଥିବା ଜମି | ୧,୨୮,୨୪୦ ହେକ୍ଟର |

## ଲୋକ ସଂଖ୍ୟା :( ୧୯୯୧ ଜନଗଣନା ଅନୁଯାୟୀ)

| | | |
|---|---|---|
| ୧ ॥ | ଜନସଂଖ୍ୟା | ୪,୨୧,୯୧୭ |
| ୨ ॥ | ଗ୍ରାମାଞ୍ଚଳରେ ବସବାସ କରନ୍ତି | ୩,୮୭,୪୮୯ |
| ୩ ॥ | ସହରାଞ୍ଚଳରେ ବସବାସ କରନ୍ତି | ୩୪,୪୨୮ |
| ୪ ॥ | ଜନସଂଖ୍ୟାର ଘନତ୍ୱ | ୬୭ ଜଣ (ପ୍ରତି ସ୍କୋୟାର କି.ମି.) |
| ୫ ॥ | ସମୁଦାୟ ପୁରୁଷ ସଂଖ୍ୟା | ୨,୧୨,୫୭୬ |
| ୬ ॥ | ସମୁଦାୟ ମହିଳା ସଂଖ୍ୟା | ୨,୦୯,୩୪୧ |
| ୭ ॥ | ପ୍ରତି ୧୦୦୦ ପୁରୁଷ ପାଇଁ ମହିଳା ହାର : | ୯୮୫ |
| ୮ ॥ | ଆଦିବାସୀ | ୨,୪୬,୨୧୪ |
| ୯ ॥ | ହରିଜନ | ୮୪,୨୦୮ |
| ୧୦ ॥ | ସାଧାରଣ ବର୍ଗ | ୯୧,୪୯୫ |
| ୧୧ ॥ | ଶତକଡ଼ା ଆଦିବାସୀ | ୫୮.୩୬ |
| ୧୨ ॥ | ଶତକଡ଼ା ହରିଜନ | ୧୯.୯୬ |
| ୧୩ ॥ | ଶତକଡ଼ା ଆଦିବାସୀ ଓ ହରିଜନ | ୬୮.୩୧ |
| ୧୪ ॥ | ଶତକଡ଼ା ପୁରୁଷ | ୫୦.୩୮ |
| ୧୫ ॥ | ଶତକଡ଼ା ମହିଳା | ୪୯.୬୨ |

### ପ୍ରଶାସନିକ ବ୍ୟବସ୍ଥା :

| | | |
|---|---|---|
| ୧ ॥ | ସବଡ଼ିଭିଜନ ସଂଖ୍ୟା | ୦୧ |
| ୨ ॥ | ତହସିଲ ସଂଖ୍ୟା | ୦୩ |
| ୩ ॥ | ଏନ୍. ଏ.ସି. | ୦୨ |
| ୪ ॥ | ସହରାଞ୍ଚଳ | ୦୧ |
| ୫ ॥ | ବ୍ଲକ ସଂଖ୍ୟା | ୦୭ |
| ୬ ॥ | ଥାନା ସଂଖ୍ୟା | ୦୮ |
| ୭ ॥ | ପୋଲିସ ଫାଣ୍ଡି | ୦୯ |
| ୮ ॥ | ଗ୍ରାମପଞ୍ଚାୟତ | ୭୭ |

| | | |
|---|---|---|
| ୯ ॥ | ରାଜସ୍ୱ ଗ୍ରାମ | ୯୩୪ |
| ୧୦॥ | ଛୋଟ ଗ୍ରାମ ବା ପଲ୍ଲୀ | ୮୪୭ |
| ୧୧॥ | ଏମ୍.ଭି. ଗ୍ରାମ ସଂଖ୍ୟା | ୧୩୨ |
| ୧୨॥ | ଏମ୍.ପି.ଭି. ଗ୍ରାମ ସଂଖ୍ୟା | ୮୧ |
| ୧୩॥ | ସମନ୍ୱିତ ଶିଶୁ ବିକାଶ ଯୋଜନା | ୦୭ |
| ୧୪॥ | ଅଙ୍ଗନବାଡ଼ି କେନ୍ଦ୍ର | ୫୭୦ |
| ୧୫॥ | ସବ୍-ଟ୍ରେଜେରି | ୦୩ |
| ୧୬॥ | ବିଚାର ବିଭାଗୀୟ ଅଦାଲତ | ୦୪ |

**କୃଷି :**

| | | |
|---|---|---|
| ୧ ॥ | ଚାଷ କରାଯାଉଥିବା ଜମି | ୧୨୮୨୪୦ ହେକ୍ଟର |
| ୨ ॥ | ଉଚ୍ଚ ଜମି | ୬୯୫୦୦ ହେକ୍ଟର |
| ୩ ॥ | ମଧ୍ୟମ ଜମି | ୩୫୬୦୦ ହେକ୍ଟର |
| ୪ ॥ | ଖାଲ ଜମି | ୨୩୧୦୦ ହେକ୍ଟର |
| ୫ ॥ | ହାରାହାରି ବାର୍ଷିକ ବୃଷ୍ଟିପାତ : | ୧୪୪୬.୪୯ ମି.ମି. |
| ୬ ॥ | ହାରାହାରି ବାର୍ଷିକ ବର୍ଷାଦିନ : | ୮୭ |
| ୭ ॥ | ଜଳସେଚିତ ଅଞ୍ଚଳ | ଖରିଫ-୧୬୦୦ହେକ୍ଟର<br>ରବି-୬୦୦୦ ହେକ୍ଟର |
| ୮ ॥ | କୃଷକ ପରିବାର ସଂଖ୍ୟା | ୫୮୧୮୬ |
| ୯ ॥ | କୃଷି ଶ୍ରମିକ ସଂଖ୍ୟା | ୨୪୫୨୫ |
| ୧୦॥ | ସାଧାରଣ କୃଷକ | ୧୭୫୦୭ |
| ୧୧॥ | ଛୋଟ ଚାଷୀ | ୨୯୯୯୮ |
| ୧୨॥ | ବଡ଼ ଚାଷୀ | ୧୦୬୮୧ |

**ଶିକ୍ଷା :**

| | | |
|---|---|---|
| ୧ ॥ | ମହାବିଦ୍ୟାଳୟ ସଂଖ୍ୟା | : ୧୦ { ସରକାରୀ-୦୧<br>ବେସରକାରୀ-୦୯ |
| ୨ ॥ | ବୈଷୟିକ ଅନୁଷ୍ଠାନ | ୦୧ |
| ୩ ॥ | ଉଚ୍ଚ ବାଳକ ବିଦ୍ୟାଳୟ | ୩୦ |

| | | |
|---|---|---|
| ୪ ।। | ଉଚ୍ଚ ବାଳିକା ବିଦ୍ୟାଳୟ | ୦୩ |
| ୫ ।। | ମଧ୍ୟ ଇଂରାଜୀ ବିଦ୍ୟାଳୟ | ୭୭ |
| ୬ ।। | ପ୍ରାଥମିକ ବିଦ୍ୟାଳୟ | ୭୬୧ |
| ୭ ।। | କନ୍ୟା ଆଶ୍ରମ | ୦୨ |
| ୮ ।। | ସେବାଶ୍ରମ | ୫୩ |
| ୯ ।। | ଇଂରେଜୀ ମାଧ୍ୟମ ବିଦ୍ୟାଳୟ : | ୦୭ |
| ୧୦ ।। | ସାକ୍ଷରତା ହାର | ୧୬.୩୦ |
| ୧୧ ।। | ପୁରୁଷ ସାକ୍ଷରତା | ୧୨.୫୦ |
| ୧୨ ।। | ମହିଳା ସାକ୍ଷରତା | ୪.୩୨ |

**ସ୍ୱାସ୍ଥ୍ୟ**

| | | |
|---|---|---|
| ୧ ।। | ସରକାରୀ ଚିକିତ୍ସାଳୟ | ୦୪ |
| ୨ ।। | ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର | ୦୫ |
| ୩ ।। | ଉନ୍ନୀତ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର | ୦୧ |
| ୪ ।। | ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର | ୦୨ |
| ୫ ।। | ସହାୟକ ସ୍ୱାସ୍ଥ୍ୟ କେନ୍ଦ୍ର | ୦୩ |
| ୬ ।। | ଅତିରିକ୍ତ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର | ୦୯ |
| ୭ ।। | ଔଷଧାଳୟ | ୦୪ |
| ୮ ।। | ଆୟୁର୍ବେଦିକ ଚିକିତ୍ସାଳୟ | ୦୧ |
| ୯ ।। | ହୋମିଓପ୍ୟାଥିକ୍ ଚିକିତ୍ସାଳୟ | ୦୧ |

**ପାନୀୟ ଜଳ :**

| | | |
|---|---|---|
| ୧ ।। | ସମୁଦାୟ ଆବଶ୍ୟକ ହେଉଥିବା ନଳକୂପ (୧୫୦ ଜଣ ପିଛା ୧ ଗୋଟି), | ୩୬୬୦ |
| ୨ ।। | ବର୍ତ୍ତମାନ ନଳକୂପ ସଂଖ୍ୟା | ୧୬୦୫ |

## ଯୋଗାଯୋଗ :

| | | |
|---|---|---|
| ୧ ॥ | ରାଜ୍ୟ ରାଜପଥ | ୧୭୦ କି.ମି. |
| ୨ ॥ | ଜିଲ୍ଲା ମୁଖ୍ୟ ସଡ଼କ | ୧୫୦ କି.ମି. |
| ୩ ॥ | ଅନ୍ୟାନ୍ୟ ଜିଲ୍ଲା ସଡ଼କ | ୬୦ କି.ମି. |
| ୪ ॥ | ଅନ୍ୟାନ୍ୟ ସୂଚୀତ ଗ୍ରାମ୍ୟ ରାସ୍ତା | ୨୦୦ କି.ମି. |
| ୫ ॥ | ପଞ୍ଚାୟତ ସମିତି ଓ ଗ୍ରାମ୍ୟ ପଞ୍ଚାୟତ ରାସ୍ତା | ୨୧୦୦ କି.ମି. |

## ଜଳସେଚନ ପ୍ରକଳ୍ପ :

| | | |
|---|---|---|
| ୧ ॥ | ବୃହତ ଜଳସେଚନ ପ୍ରକଳ୍ପ | ପୋଟେରୁ |
| ୨ ॥ | ମଧ୍ୟମ ଜଳସେଚନ ପ୍ରକଳ୍ପ | ସତୀଗୁଡ଼ା |
| ୩ ॥ | ଛୋଟ ଜଳସେଚନ ପ୍ରକଳ୍ପ ସଂଖ୍ୟା : | ୨୧ |
| ୪ ॥ | ଉଠା ଜଳସେଚନ କେନ୍ଦ୍ର | ୪୮ |

## ବିଦ୍ୟୁତକରଣ :

| | | |
|---|---|---|
| ୧ ॥ | ବିଦ୍ୟୁତକରଣ କରାଯାଇଥିବା ଗ୍ରାମ | ୩୦୯ |
| ୨ ॥ | ବିଦ୍ୟୁତକରଣ କରିବାକୁ ଥିବା ଗ୍ରାମ | ୬୨୫ |
| ୩ ॥ | ଜଳବିଦ୍ୟୁତ କେନ୍ଦ୍ର | ବାଲିମେଳା |

## ହାଟ ଓ ବଜାର :

| | | |
|---|---|---|
| ୧ ॥ | ସାପ୍ତାହିକ ହାଟ | ୪୨ |
| ୨ ॥ | ନିୟନ୍ତ୍ରିତ ବଜାର କମିଟି | ୦୧ |
| ୩ ॥ | ଆଞ୍ଚଳିକ ସମବାୟ ବଜାର ସମିତ : | ୦୧ |
| ୪ ॥ | ଅଗ୍ରଦୂତ କୃଷି ସମବାୟ ସମିତି | ୦୧ |
| ୫ ॥ | ଟି.ଡ଼ି.ସି.ସି. କେନ୍ଦ୍ର | ୦୧ |

**ଅନ୍ୟାନ୍ୟ ସଂସ୍ଥା :**

| | | |
|---|---|---|
| ୧ ॥ | ଦୂରଦର୍ଶନ ପୁନଃପ୍ରସାରଣ କେନ୍ଦ୍ର | ୦୧ |
| ୨ ॥ | ସମବାୟ ଭୂମି ଉନ୍ନୟନ ବ୍ୟାଙ୍କ | ୦୧ |
| ୩ ॥ | ସର୍ବମୋଟ ବାଣିଜ୍ୟ ବ୍ୟାଙ୍କ | ୨୦ |
| ୪ ॥ | ଲ୍ୟାଂପ ଏବଂ ଅନ୍ୟ ସମବାୟ ସଂସ୍ଥା: | ୧୧ |
| ୫ ॥ | ଜିଲ୍ଲା ଗ୍ରାମ୍ୟ ବିକାଶ ସଂସ୍ଥା | ୦୧ |
| ୬ ॥ | ସମନ୍ୱିତ ଆଦିବାସୀ ବିକାଶ ସଂସ୍ଥା : | ୦୧ |
| ୭ ॥ | ମାଇକ୍ରୋ ପ୍ରୋଜେକ୍ଟ | ୦୨ |
| ୮ ॥ | କାଡ଼ା ସଂସ୍ଥା | ୦୧ |
| ୯ ॥ | ମ୍ୟାଲେରିଆ ଜୀବାଣୁ ନିୟନ୍ତ୍ରଣ ଗବେଷଣା କେନ୍ଦ୍ର | ୦୧ |
| ୧୦॥ | ଭାରତୀୟ କୁଷ୍ଠ ନିରାକରଣ କେନ୍ଦ୍ର : ( ଲେପ୍ରା ଇଣ୍ଡିଆ ) | ୦୧ |

**ବଡ଼ ନଈ :**

୧॥ ସିଲେରୁ (ଆନ୍ଧ୍ର ସୀମାରେ )
୨॥ ସାବେରୀ (ମଧ୍ୟପ୍ରଦେଶ ସୀମାରେ )
୩॥ ସପ୍ତଧାରା (ଗୋବିନ୍ଦ ପାଲ୍ଲୀ)

**ବଡ଼ ପାହାଡ଼ :**

୧ ॥ ତୁଳସୀ ପାହାଡ଼ (ମାଥିଲି)
୨ ॥ ଶୁଳିଆ ପାହାଡ଼ (କୋରୁକୋଣ୍ଡା)
୩ ॥ ଚିତ୍ରକୂଟ ପାହାଡ଼ (ଚିତ୍ରକୋଣ୍ଡା)
୪ ॥ ସପ୍ତଧାରା ଘାଟି (ଗୋବିନ୍ଦପାଲ୍ଲୀ)
୫ ॥ ଭୀମା ପାହାଡ଼ (ଦାନୀଗୁଡ଼ା)
୬ ॥ ତଙ୍ଗା ପାହାଡ଼ (ତଣ୍ଡିକି)
୭ ॥ ଦେବ ଡଙ୍ଗର ବା ଗୋଣ୍ଡ ପାହାଡ଼ (ମାଲକାନଗିରି)

୮ ॥ ସୀମାନ୍ତରେ ଥିବା ଗୋଲିକୋଣ୍ଡା (ବଡ଼ ଦୁରାଲ)
୯ ॥ ଆକୁରୁ ପର୍ବତ (ଆକୁରୁ)

**ପ୍ରାକୃତିକ ପର୍ଯ୍ୟଟନ ସ୍ଥଳ ଓ ଦର୍ଶନୀୟ ଅଞ୍ଚଳ :**

୧ ॥ ବଣ୍ଡା ପାହାଡ଼ର ଆମାକୁଣ୍ଡ ।
୨ ॥ ମୋଟୁ ଠାରେ ଥିବା ସିଲେରୁ ଓ ସାବେରୀ ନଦୀର ମିଳନ ସ୍ଥଳୀ ।
୩ ॥ ଚିତ୍ରକୋଣ୍ଡା ଜଳଭଣ୍ଡାର ଭିତରେ ଥିବା ଭୂଭାଗ ।
୪ ॥ ଚଲାଣଗୁଡ଼ାରେ ଥିବା ତମସା ଘାଟ ।
୫ ॥ ସତୀଗୁଡ଼ା ଡ୍ୟାମ୍ ଓ ଏହାର ନିକଟରେ ଅବସ୍ଥିତ ଶୈବ ଗୁମ୍ଫା ।
୬ ॥ ପଦ୍ମଗିରି ନିକଟସ୍ଥ ଯଦୁଗୁଡ଼ା ।
୭ ॥ ମାନ୍ୟମକୋଣ୍ଡା (ଯେଉଁଠାରେ ଏଠାକାର ବଡ଼ ମହାପ୍ରଭୁ ରହନ୍ତି)
୮ ॥ ବାଲିମେଳା ଜଳବିଦ୍ୟୁତ କେନ୍ଦ୍ର । ❖❖❖

